Licence No. C.R.N.P. 5—Licensed to post without Pre-payment



ଆଠଗଡ଼ଠାରେ ଏକ ରାଜ୍ୟ ସ୍ତରୀୟ ଉତ୍ସବରେ ସମାଜ ସମ୍ପାଦକ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥଙ୍କ ଜନ୍ମଶତବାର୍ଷିକ ଉତ୍ସବ ମହା ସମାରୋହରେ ଉଦ୍‌ଯାପିତ । ୬-୧୨



କଟକ ବାରବାଟୀ ଷ୍ଟାଡ଼ିୟମଠାରେ ଓଡ଼ିଶା ଓ ପଞ୍ଜାବ ମହିଳା ପ୍ରତିଯୋଗୀମାନଙ୍କ ମଧ୍ୟରେ ଅନୁଷ୍ଠିତ ହେବାକୁ ଯାଉଥିବା ହକି ମ୍ୟାଚ୍‌ର ଅବ୍ୟବହିତ ପୂର୍ବରୁ ପଞ୍ଜାବର ମହିଳା ହକି ଖେଳାଳିଗଣ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ନିଜ ନିଜର ପରିଚୟ ପ୍ରଦାନ କରୁଛନ୍ତି । ୨-୧୨

Printed at Orissa Government Press, Cuttack-753010



ଭୁବନେଶ୍ୱର ମହାତ୍ମାଗାନ୍ଧୀ ମାର୍ଗଠାରେ ଆୟୋଜିତ ସାଧାରଣତନ୍ତ୍ର ଦିବସ ପ୍ୟାରେଡ଼ ଉତ୍ସବରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଭିବାଦନ ଗ୍ରହଣ କରୁଛନ୍ତି



[illegible] [illegible] ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ପୋଲିସ ମେଡ଼ାଲ ପ୍ରଦାନ କରୁଛନ୍ତି

# ଉତ୍କଳ ପ୍ରସଙ୍ଗ

୫୩ ଭାଗ ୭ମ ସଂଖ୍ୟା ମାଘ-ଫାଲଗୁନ ୧୯୧୮ ଶକାବ୍ଦ ଫେବୃୟାରୀ ୧୯୯୭



ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ: ଟ ୨.୦୦



**ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ**

**ଏବଂ**

**କମ୍ପ୍ୟୁଟରାଇଜ୍ ଏବଂ ଡିଟିପି ସିଷ୍ଟମ : ସୂଚନା ଓ ଲୋକ ସମ୍ପର୍କ ବିଭାଗ**

# ସୂଚୀ



# ଅଭିନନ୍ଦନ-ପଞ୍ଚକମ୍

ପ୍ରଫେସର ଗୌରୀକୁମାର ବ୍ରହ୍ମା

(ମୁଖ୍ୟମନ୍ତ୍ରୀ ଶ୍ରୀଜାନକୀ ବଲ୍ଲଭ ପଟ୍ଟନାୟକ ବିଖ୍ୟାତ ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟରୁ ୧୯।୧୨।୯୬ ରେ ଡ଼ି.ଲିଟ୍ ଉପାଧି ପାଇବା ଉପଲକ୍ଷେ)

(୧)

ତ୍ୱଂ ମାତୃଭୂମେଃ-ତନୟୋ ବରିଷ୍ଠୋ
ଜ୍ଞାନେ ଚ ମାନେ ଯଶସା ଗରିଷ୍ଠଃ ।
ବିଦ୍ୟାବିମର୍ଶେ ନନୁ କର୍ମନିଷ୍ଠୋ
ସଦା ହିତେ ପଣ୍ଡିତ ଏବ ପ୍ରେଷ୍ଠଃ ॥୧॥

(୨)

ବାଚସ୍ତ୍ୱଦୀୟାଃ ସକଳେଷୁ କାନ୍ତାଃ
ଶିକ୍ଷ-ପ୍ରସାରାୟ ଧିୟୋଽପ୍ୟନନ୍ତାଃ ।
ଦେଶ-ପ୍ରଗତ୍ୟୈ ବିବିଧାଃ ସ୍ୱଚିନ୍ତାଃ
ନୀତି-ପ୍ରଚାରାୟ ମତିଃ ପ୍ରଶାନ୍ତା ॥୨॥

(୩)

ନିତ୍ୟଂ ଜଗନ୍ନାଥ-ପଦାନୁରକ୍ତା
ମତିସ୍ତ୍ୱଦୀୟା ଚିର-ଭକ୍ତି-ସିକ୍ତା ।
ଅନ୍ୟେଷୁ ଧର୍ମେଷ୍ୱପି ସାଽନୁରକ୍ତା
ସଂକୀର୍ଣ୍ଣତାଦୌ ନିତରାଂ ବିରକ୍ତା ॥୩॥

(୪)

ବିଚିନ୍ତ୍ୟ ଦେଶେ ବହୁ-ପଣ୍ଡିତାନାଂ
ସାହିତ୍ୟସେବାଂ ଗୁଣ-ମଣ୍ଡିତାନାମ୍ ।
ତ୍ୱଂ ବିଶ୍ୱବିଦ୍ୟାଳୟ-କାରକୋଽଭୂଃ
ଚିନ୍ତା ହି ତେ ସର୍ଜ୍ଜନ-କଳ୍ପନା-ଭୂଃ ॥୪॥

(୫)

ଅହୋ ! ସ୍ୱସତ୍କର୍ମ-ଫଳ-ସ୍ୱରୂପଂ
ବାଲାଜି-ନାଥସ୍ୟ-କୃପାନୁରୂପମ୍ ।
ଡି-ଲିଟ୍-ପଦଂ ତେଽତ୍ର ପବିତ୍ର-ଯୂପଃ
ତତୋତ୍କଳାନାଂ ହି ପ୍ରମୋଦ-ଧୂପଃ ॥୫॥

ମାଉସୀମା ମନ୍ଦିର ନିକଟ
ଭୁବନେଶ୍ୱର-୨

# ନୂତନ ଯୁଗ : ସ୍ୱପ୍ନ ଓ ସଂକଳ୍ପର

**ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ**

ଭାରତରେ ଦୁଇଟି ଦିବସ ହେଉଛି ଆମ ପାଇଁ ସବୁଠାରୁ ପବିତ୍ର ଦିନ - ସ୍ୱାଧୀନତା ଦିବସ ଏବଂ ସାଧାରଣତନ୍ତ୍ର ବା ପ୍ରଜାତନ୍ତ୍ର ଦିବସ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସ ଦେଶର ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିଥିଲା । ତଦନୁଯାୟୀ ୧୯୪୭ ମସିହାରେ ଦେଶ ସ୍ୱାଧୀନ ହେବା ପରେ ସମ୍ବିଧାନ ସଭା ଗଠନ କରାଯାଇ ଏକ ସମ୍ବିଧାନ ପ୍ରଣୟନ କରାଗଲା, ଯେଉଁ ସମ୍ବିଧାନ ୧୯୫୨ ମସିହାଠାରୁ ଏ ଦେଶରେ ଚାଲି ଆସୁଛି । ଏ ସମ୍ବିଧାନ ହେଉଛି, ଗଣତାନ୍ତ୍ରିକ ସମ୍ବିଧାନ । କେଉଁ ବାଟରେ ଦେଶ ଚାଲିବ, କିପରି ଭାବରେ ଆମେ ଆମର ଶାସକମାନଙ୍କୁ ନିର୍ବାଚିତ କରିବା, କିପରି ଭାବରେ ନ୍ୟାୟ ଲୋକଙ୍କୁ ମିଳିପାରିବ, କିପରି ଭାବରେ ଜନସାଧାରଣଙ୍କର ଯୁଗ ଯୁଗ ଧରି ପୁଞ୍ଜିଭୂତ ଅଶିକ୍ଷା, ଦାରିଦ୍ର୍ୟ, କୁସଂସ୍କାର ଦୂରୀଭୂତ ହୋଇପାରିବ, ସେ ସମ୍ପର୍କରେ ଏ ସମ୍ବିଧାନରେ ବିଶଦ ଭାବରେ ଉଲ୍ଲେଖ କରାଯାଇଛି । ତଦନୁଯାୟୀ ଏ ଦେଶ ୧୯୫୨ ମସିହାଠାରୁ ଆଜି ପର୍ଯ୍ୟନ୍ତ ୪୫ ବର୍ଷଧରି ଚାଲିଆସୁଛି । ସଫଳତାର ସହିତ ଗଣତନ୍ତ୍ର ଶାସନ ଭାରତବର୍ଷରେ ଚାଲିଛି । ପୃଥିବୀର ବହୁ ରାଜ୍ୟରେ ଗଣତନ୍ତ୍ର ଶାସନ ଲୋପ ହୋଇଯାଇଛି କିନ୍ତୁ ପରୀକ୍ଷା ପରେ ଦେଖାଯାଇଛି ଗଣତନ୍ତ୍ର ଶାସନଠାରୁ ଅନ୍ୟ କୌଣସି ଉତ୍କୃଷ୍ଟତର ଶାସନ ନାହିଁ । ସେ ସାମରିକ ଏକଛତ୍ରବାଦ ହେଉ ବା ଦଳୀୟ ଏକଛତ୍ରବାଦ ହେଉ, ତାର ପରୀକ୍ଷା ଯେଉଁ ସବୁ ଦେଶରେ ହୋଇଛି, ସେ ସବୁ ଦେଶ ତାର ପରିଣାମ ଭୋଗ କରିଛନ୍ତି । ସମସ୍ତେ ଆଜି ମୁକ୍ତ କଣ୍ଠରେ ସ୍ୱୀକାର କରୁଛନ୍ତି ଯେ ଏକମାତ୍ର ରାସ୍ତା ହେଉଛି ଗଣତନ୍ତ୍ରର ରାସ୍ତା, ଯାହାକି ଭାରତବର୍ଷ ଗ୍ରହଣ କରିଛି । ଏ ଗଣତନ୍ତ୍ର ଅନୁଯାୟୀ ଆମ ଦେଶର ଲୋକେ ଭୋଟ ଦେଇ ସେମାନଙ୍କର ପ୍ରତିନିଧିମାନଙ୍କୁ ନିର୍ବାଚିତ କରନ୍ତି । ବିନା ଭୋଟରେ ଶାସନ ଚାଲିପାରିବନାହିଁ, ଏହା ହେଉଛି ସମ୍ବିଧାନର ଲକ୍ଷ୍ୟ । ବିନା ଜନମତରେ ଶାସନ ଚାଲିପାରିବ ନାହିଁ, ଏହା ହେଉଛି ସମ୍ବିଧାନର ନିର୍ଦ୍ଦେଶ । ସେଇ ଅନୁସାରେ ଆମ ଦେଶର ବିଚାର ବିଭାଗ ରହିଛି, ଶାସନର ଦୋଷତ୍ରୁଟି ବା ସାମାଜିକ କ୍ଷେତ୍ରରେ, ଆଇନ କ୍ଷେତ୍ରରେ, କୌଣସି ଦୋଷତ୍ରୁଟି ରହିଲେ ତା'ର ସଂଶୋଧନ କରିବା ପାଇଁ । ସେଇଥିପାଇଁ ଆମର ବିଧାନସଭା ଏବଂ ପାର୍ଲାମେଣ୍ଟ ରହିଛି, ଯିଏ ଲୋକଙ୍କ ପାଇଁ ଆଇନ୍ ପ୍ରଣୟନ କରିବ ଏବଂ ଯେଉଁ ଆଇନ ଦ୍ୱାରା ଦେଶ ଶାସିତ ହେବ, ରାଜ୍ୟ ଶାସିତ ହେବ । ଏହି ସମ୍ବିଧାନ ଫଳରେ ଆଜି ଭାରତବର୍ଷର ଦ୍ରୁତ ଅଗ୍ରଗତି ସମ୍ଭବ ହୋଇଛି । ଭାରତବର୍ଷ ଆଜି ପୃଥିବୀରେ ଗୋଟିଏ ପ୍ରଧାନ ଶକ୍ତି ରୂପେ ଦେଖା ଦେଇଛି । ତା'ର କାରଣ ହେଉଛି ଭାରତର ଜନସାଧାରଣ ନିଜେ ନିଜକୁ ଶାସିତ କରି ଏକ ସୁନ୍ଦର ଦେଶ ଗଠନ କରିବା ପାଇଁ ଚେଷ୍ଟା କରିଛନ୍ତି । କିନ୍ତୁ ୪୫ ବର୍ଷପରେ ଆମେ ଆଜି ସିଂହାବଲୋକନ କରି ଦେଖିବା ଦରକାର ଯେ ପ୍ରକୃତରେ ସମସ୍ତ ସମସ୍ୟାର ଆମେ ସମାଧାନ କରି ପାରିଛେ କି ନାହିଁ । ସମସ୍ତ ସମସ୍ୟା କେବେହେଲେ କେହି ସମାଧାନ କରିପାରିବେ ନାହିଁ କିନ୍ତୁ କେତେକ ମୁଖ୍ୟ ସମସ୍ୟା, ଯାହା ହେଉଛି ଦାରିଦ୍ର୍ୟର ସମସ୍ୟା, ଅଜ୍ଞତାର ସମସ୍ୟା । ଏପର୍ଯ୍ୟନ୍ତ ମଧ୍ୟ ଭାରତ ବର୍ଷର କୋଟି କୋଟି ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି, ଗରିବ ଅବସ୍ଥାରେ ରହିଛନ୍ତି । କୋଟି କୋଟି ଲୋକ ନିରକ୍ଷର ଭାବରେ ରହିଛନ୍ତି । ଏପର୍ଯ୍ୟନ୍ତ ମଧ୍ୟ ଭାରତର କୋଟି କୋଟି ଲୋକଙ୍କୁ ନିକୃଷ୍ଟ ବୋଲି ଗଣାଯାଉଛି । ଯେ ପର୍ଯ୍ୟନ୍ତ ଆମେ ଏହା ଦୂର କରି ପାରିନାହିଁ ସେ ପର୍ଯ୍ୟନ୍ତ ଆମେ ଗର୍ବ କରିପାରିବା ନାହିଁ ଯେ ଆମେ ଏକ ସ୍ୱାଧୀନ, ସଭ୍ୟ, ଆଦର୍ଶ ରାଷ୍ଟ୍ର । ପ୍ରତି ସାଧାରଣତନ୍ତ୍ର ଦିବସରେ ଆମକୁ ଏଥିପାଇଁ ପ୍ରତିଜ୍ଞା କରିବାକୁ ହେବ । ଭାରତ ସହିତ ବା ଭାରତ ପରେ ମାଲେସିଆ, ଥାଇଲ୍ୟାଣ୍ଡ, ଏବଂ ଇଣ୍ଡୋନେସିଆ ଭଳି ଏସିଆର ଯେଉଁସବୁ ଛୋଟ ଛୋଟ ଦେଶ ସ୍ୱାଧୀନ ହୋଇଥିଲେ, ସେ ସବୁ ଦେଶର ଯେଉଁ ଅଗ୍ରଗତି ହୋଇଛି ତାକୁ ବିଶ୍ୱାସ କରିପାରିବା ନାହିଁ । ଏତେ ଅଳ୍ପ କାଳ ଭିତରେ ସେମାନେ ତାଙ୍କର ଦାରିଦ୍ର୍ୟ ଦୂରକରି ପାରିଛନ୍ତି । ବେକାର ସମସ୍ୟାର ସମାଧାନ କରିପାରିଛନ୍ତି । ରାଷ୍ଟ୍ରକୁ ଶିଳ୍ପ ସମୃଦ୍ଧ କରିପାରିଛନ୍ତି କିନ୍ତୁ ଆମେ ଆଜି ଏକ୍ଷେତ୍ରରେ ଦକ୍ଷିଣ କୋରିଆ ହେଉ, ହଂକଂ ହେଉ, ସିଙ୍ଗାପୁର ହେଉ, ଥାଇଲ୍ୟାଣ୍ଡ ହେଉ, ଇଣ୍ଡୋନେସିଆ ହେଉ ଏସବୁ ଦେଶ ତୁଳନାରେ ବହୁତ ପଛରେ

ପଡ଼ିବୁ । ଅବଶ୍ୟ ଏସବୁ ଦେଶରେ ଗଣତନ୍ତ୍ର ଶାସନ ସୁପ୍ରତିଷ୍ଠିତ ହୋଇପାରିନାହିଁ । କିନ୍ତୁ ତା ନହେଲେ ମଧ୍ୟ ସେମାନେ ଯେ ଏ ସମସ୍ୟାର ସମାଧାନ କରିପାରିଛନ୍ତି, ଦେଶରେ ଯଥେଷ୍ଟ ନିଯୁକ୍ତିର ସୁଯୋଗ ସୃଷ୍ଟି କରିପାରିଛନ୍ତି, ବିଭିନ୍ନ କ୍ଷେତ୍ରରେ ଅଗ୍ରଗତି କରିପାରିଛନ୍ତି ଏବଂ ପୃଥିବୀର ପାଶ୍ଚାତ୍ୟ ଦେଶମାନଙ୍କ ସହିତ ଆଜି ସମୃଦ୍ଧ ହେବା ପାଇଁ ଚେଷ୍ଟାକରି ସଫଳ ହୋଇପାରିଛନ୍ତି, ସେଥିରୁ ଆମକୁ ଶିକ୍ଷା ଲାଭ କରିବାକୁ ହେବ । ଅଳ୍ପକାଳ ଭିତରେ ଆମକୁ ଏ ଦାରିଦ୍ର୍ୟ, ଏ ଅଶିକ୍ଷା, ଏ କୁସଂସ୍କାର ଦୂର କରିବାକୁ ପଡ଼ିବ, ତା' ନହେଲେ ଆମେ ପୃଥିବୀରେ ମୁଣ୍ଡଟେକି ଚାଲିପାରିବା ନାହିଁ । ୧୯୪୭ ମସିହା ପରେ ଭାରତବର୍ଷର ବହୁତ ଖ୍ୟାତି ଥିଲା । ପୃଥିବୀର ବିଭିନ୍ନ ଦେଶ ଯେପରି ସମ୍ମାନର ସହ ଭାରତବର୍ଷକୁ ଦେଖୁଥିଲେ, ଆଜି ତା'ର ପରିବର୍ତ୍ତନ ଘଟିଛି । କାରଣ ଦାରିଦ୍ର୍ୟକୁ ଧରି ଆମେ ବେଶୀଦିନ ପୃଥିବୀରେ ନେତୃତ୍ୱ ଦେଇପାରିବା ନାହିଁ । 'ଦାରିଦ୍ର୍ୟ ଦୋଷ ଗୁଣରାଶି ନାଶି' ଯାହାକିଛି ସଦ୍‌ଗୁଣ ଥିବ ମଣିଷର ଦାରିଦ୍ର୍ୟ ଦୋଷ ତାକୁ ନଷ୍ଟ କରେ । ତେଣୁ ଆଜି ଏଦିବସରେ ଆମର ସଂକଳ୍ପ, ଆମର ପ୍ରତିଜ୍ଞା ହେବା ଦରକାର ଆମେ ଦାରିଦ୍ର୍ୟକୁ ଦୂରକରିବା, ଅଶିକ୍ଷାକୁ ଦୂରକରିବା, କୁସଂସ୍କାର ଦୂରକରିବା ଏବଂ ଭାରତବର୍ଷକୁ ପୃଥିବୀର ଏକ ମହାନ୍ ଦେଶରେ ପରିଣତ କରିବା ।

ଭାରତବର୍ଷର ଯାହା ସମସ୍ୟା, ଓଡ଼ିଶାର ତାହା ସମସ୍ୟା । ବରଂ ଓଡ଼ିଶା ସମସ୍ୟା ହେଉଛି ଭାରତବର୍ଷର ସମସ୍ୟାମାନଙ୍କଠାରୁ ଉତ୍କଟତର । କାରଣ ଆଜି ସବୁଠାରୁ ଦରିଦ୍ର ରାଜ୍ୟ କହିଲେ ୨/୩ଟି ରାଜ୍ୟ ମଧ୍ୟରେ ଓଡ଼ିଶାକୁ ଗଣାଯାଏ । ଏ ଦାରିଦ୍ର୍ୟ ଦୂର ନହେବା ପର୍ଯ୍ୟନ୍ତ ଓଡ଼ିଶା ତା'ର ଅତୀତର ଗର୍ବ ଏବଂ ଗୌରବ ଫେରି ପାଇବ ନାହିଁ । ଦାରିଦ୍ର୍ୟ ଦୂର କରିବା ପାଇଁ ଯାହାକିଛି ଉପାଦାନ ଦରକାର, ଆମର ଅଛି । ବିପୁଳ ପ୍ରାକୃତିକ ସଂପଦ, ଜଳସଂପଦ, ଅରଣ୍ୟ ସଂପଦ, ଖଣିଜ ସଂପଦ, ସମୁଦ୍ରର ସୁଦୀର୍ଘ ଉପକୂଳ ଏସବୁ ଆମର ରହିଛି କିନ୍ତୁ ଏସବୁ ସତ୍ତ୍ୱେ ଆମେ ଅନ୍ୟ ଦେଶମାନଙ୍କୁ ଦେଖିଲେ ଏତେ ପଛରେ ପଡ଼ିରହିଛେ, ଯାହାକି ବିଶ୍ୱାସ କରିହେବ ନାହିଁ । ଏ ଅବସ୍ଥାର ଅବସାନ ଘଟାଇବାକୁ ହେଲେ ଆମକୁ ଏକ ମହାନ୍ ସଂକଳ୍ପ ଗ୍ରହଣ କରିବାକୁ ପଡ଼ିବ । ସେଥିପାଇଁ ଓଡ଼ିଶାରେ ଏକ ଅଭିଯାନ ଆରମ୍ଭ ହୋଇଛି । କୃଷି କ୍ଷେତ୍ରରେ ବହୁଦିନ ଧରି ଯେଉଁ ଦୁରବସ୍ଥା ଅଛି ତାକୁ ଦୂରକରିବା । ମରୁଡ଼ି ଫଳରେ ରାଜ୍ୟର ଅର୍ଥନୀତି ବାରମ୍ବାର ବିପର୍ଯ୍ୟସ୍ତ ହେଉଛି । ରାଜ୍ୟର ଏକ ପ୍ରଧାନ ଅଞ୍ଚଳରେ ସବୁବେଳେ ମରୁଡ଼ି ଲାଗିରହୁଛି । ଆମକୁ ସଂକଳ୍ପ କରିବାକୁ ହେବ ଭବିଷ୍ୟତରେ ଯେପରି ମରୁଡ଼ି ନହେଁ । କେତେ ବର୍ଷା ଆମର ହେଉଛି । ଏ ବର୍ଷାର ପାଣି ସମୁଦ୍ରକୁ ଚାଲିଯାଉଛି ନଈନାଳମାନଙ୍କ ଜରିଆରେ । ଆମେ ଯଦି ଏଥିରୁ କିଛି ଅଂଶ ରକ୍ଷାକରିପାରିବା, ସୁରକ୍ଷା କରିପାରିବା ତା ହେଲେ ମରୁଡ଼ିକୁ ଦୂର କରିପାରିବା । ଛୋଟିଆ ଗୋଟେ ଦେଶ ପୃଥିବୀରେ ଇସ୍ରାଏଲ, ଯେଉଁ ଦେଶରେ ମାତ୍ର ୧୫'' ବର୍ଷା ହୁଏ । ସେମାନେ ଆଜି ତାଙ୍କ ଦେଶକୁ ଶସ୍ୟଶ୍ୟାମଳା କରିଛନ୍ତି । ଆମର ୫୫'' ବର୍ଷା ହୋଇ କରି ମଧ୍ୟ ଓଡ଼ିଶାର କେତେକ ଅଂଶକୁ ମରୁଡ଼ିଗ୍ରସ୍ତ ହେବାକୁ ଦେଉଛୁ । ତେଣୁ ଏ ଅବସ୍ଥାର ଅବସାନ ପାଇଁ ସଂକଳ୍ପ ଦରକାର । ସେ ସଂକଳ୍ପ ଜରିଆରେ ଓଡ଼ିଶାକୁ ଆମେ ମରୁଡ଼ିମୁକ୍ତ କରିବୁ । ଯେଉଁଠି ଯାହା ଜଳସଂପଦ ଅଛି, ବର୍ଷାପାଣି ବହିଯାଉଛି, ସେ ସବୁର ସୁଯୋଗ ନେଇ ଛୋଟ ଛୋଟ ନଈନାଳମାନଙ୍କରେ ବନ୍ଧ ବାନ୍ଧି ସ୍ଥାୟୀ ଅସ୍ଥାୟୀ ବିଭିନ୍ନ ପ୍ରକାର ବାଟରେ ଆମେ ସଂପୂର୍ଣ୍ଣ ଭାବରେ ଲୋକଙ୍କୁ ଜଳ ଯୋଗାଇ ଦେଇପାରିବା, ଚାଷୀମାନଙ୍କୁ ଜଳଯୋଗାଇ ଦେଇ ପାରିବା ଏବଂ ବୈଜ୍ଞାନିକ ପ୍ରଣାଳୀରେ କୃଷିକରି ଓଡ଼ିଶାକୁ ଭାରତବର୍ଷରେ ଏକ ଆଦର୍ଶ କୃଷି ପ୍ରଧାନ ରାଜ୍ୟରେ ପରିଣତ କରିପାରିବା ।

ଏହା ସହିତ ଶିଳ୍ପ କ୍ଷେତ୍ରରେ ଅଭ୍ୟୁତ୍ଥାନ ଆରମ୍ଭ ହୋଇଛି । ଆଜି ଓଡ଼ିଶାରେ ହେବାକୁ ଯାଉଛି ଏକାଧିକ ଇସ୍ପାତ କାରଖାନା, ଏକାଧିକ ଆଲୁମିନା କାରଖାନା, ଏକାଧିକ ତୈଳବିଶୋଧନାଗାର ଏବଂ ବିଭିନ୍ନ ପ୍ରକାର କଳକାରଖାନା । ବହୁ ସଂଖ୍ୟାରେ ଚିନିକଳ, ବସ୍ତ୍ରଶିଳ୍ପ, କୃଷିର ଉନ୍ନତି, ଶିଳ୍ପର ଉନ୍ନତି ଦ୍ୱାରା ଆମେ ବେକାର ସମସ୍ୟାର ସମାଧାନ କରିବା । ଓଡ଼ିଶାରେ ପର୍ଯ୍ୟଟନର ଯେଉଁ ସମ୍ଭାବନା ରହିଛି ଭାରତବର୍ଷରେ ତାହା ଦୁର୍ଲଭ । କାରଣ ଆମର ଯେଉଁ ବିଶାଳ ବେଳାଭୂମି ଅଛି, ଅରଣ୍ୟର ସଂପଦ ରହିଛି ଏବଂ ଯେଉଁ ଐତିହାସିକ ବିଭବ ରହିଛି ସେସବୁ ଯେ କୌଣସି ଦେଶ ପାଇଁ ଗର୍ବ ଏବଂ ଗୌରବର ବିଷୟ । ତା'ର ପୂର୍ଣ୍ଣ ସୁଯୋଗ ନେଇ ଆମେ ବେକାର ସମସ୍ୟାର ସମାଧାନ କରିବା । ଏ ହେଉଛି ଆମର ସଂକଳ୍ପ । ବେକାର ସମସ୍ୟାର ସମାଧାନ, ଦାରିଦ୍ର୍ୟର ସମାଧାନ, ଅଶିକ୍ଷାର ସମାଧାନ ଏହାହିଁ ହେଉଛି ଆଜି ଦିନର ଆହ୍ୱାନ ।

ଆଜି ନୂଆ ଯୁଗର ଆରମ୍ଭ ହୋଇଛି । ଏକ ନୂଆ ସ୍ୱପ୍ନ, ନୂଆ ସଂକଳ୍ପ-ଏହାକୁ ଆମେ କାର୍ଯ୍ୟକାରୀ କରି ଓଡ଼ିଶାକୁ ଭାରତବର୍ଷରେ ଆଗେଇ ଦେବା ।

(୪୮ତମ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଭୁବନେଶ୍ୱରଠାରେ ରାଜ୍ୟସ୍ତରୀୟ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ପଢଇ ଭାଷଣରୁ)

# ଶ୍ରୀମନ୍ଦିର ନିର୍ମାଣର ଇତିହାସ

ଶ୍ରୀ ରବି ରାୟ

ପୁରୀର ପ୍ରସିଦ୍ଧ ଶ୍ରୀଜଗନ୍ନାଥ ମନ୍ଦିର ବା ଶ୍ରୀମନ୍ଦିର ଚାରିଭାଗରେ ବିଭକ୍ତ । (୧) ବିମାନ - (ମଧ୍ୟ ଯୁଗୀୟ ପଞ୍ଚରଥ ରେଖ ଦେଉଳ), (୨) ଜଗମୋହନ - (ପୀଢ଼ ଦେଉଳ), (୩) ଭୋଗମଣ୍ଡପ -(ପୀଢ଼ ଦେଉଳ), (୪) ନାଟ ମଣ୍ଡପ - (ସମତଳ ଛାତ ବିଶିଷ୍ଟ ଆରାଧନା ଗୃହ) । ମୁଖ୍ୟ ମନ୍ଦିର ଓ ଜଗମୋହନ ନିର୍ମାଣର ବହୁ କାଳ ପରେ ଭୋଗମଣ୍ଡପ ଓ ନାଟମଣ୍ଡପ ନିର୍ମିତ ହୋଇଛି ।

(୧) ପୌରାଣିକ ମତ ଅନୁସାରେ ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ହେଉଛନ୍ତି ଜଗନ୍ନାଥ ମନ୍ଦିରର ଆଦ୍ୟନିର୍ମାତା । (୨) ମାଦଳା ପାଞ୍ଜିର ବର୍ଣ୍ଣନାନୁସାରେ ଯଯାତିରାଜା ୩୮ ହାତ ଉଚ୍ଚର ଏକ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । (୩) ମାଦଳାପାଞ୍ଜି, ରାଜବଂଶାବଳୀ, ଗଙ୍ଗ ବଂଶାନୁଚରିତ ଅନୁସାରେ ଅନଙ୍ଗଭୀମ ଦେବ ପରିଦୃଶ୍ୟମାନ ଜଗନ୍ନାଥ ମନ୍ଦିର ନିର୍ମାଣ କରିଛନ୍ତି । (୪) ତୃତୀୟ ରାଜରାଜଙ୍କ ୧୧୯୮ ଖ୍ରୀ:ଅ:ର ଦାସଗୋବା ତାମ୍ର ଶାସନ ଅନୁସାରେ ଚୋଡଗଙ୍ଗ ପରିଦୃଶ୍ୟମାନ ଜଗନ୍ନାଥଙ୍କ ବିମାନ ଓ ଜଗମୋହନ ନିର୍ମାତା ।

ବିଂଶ ଶତାବ୍ଦୀର ପ୍ରଖ୍ୟାତ ଐତିହାସିକଗଣ ଚତୁର୍ଥ ମତ ଯଥା: ଚୋଡଗଙ୍ଗ ଜଗନ୍ନାଥ ମନ୍ଦିର ନିର୍ମାତା ସିଦ୍ଧାନ୍ତ ଉପରେ ଗୁରୁତ୍ୱ ଦେଇ ଏହା ଅଧିକ ସତ୍ୟାଧାରିତ ବୋଲି କହିଆସନ୍ତି । ଆଲୋଚ୍ୟ ପ୍ରବନ୍ଧରେ ଚୋଡଗଙ୍ଗ ଜଗନ୍ନାଥ ମନ୍ଦିରର ନିର୍ମାତା ସିଦ୍ଧାନ୍ତର ପରିପନ୍ଥୀ କେତେକ ଐତିହାସିକ ତଥ୍ୟର ସଂକ୍ଷିପ୍ତ ଆଲୋଚନା କରାଯାଇ ଏହି ଚତୁର୍ଥ ସିଦ୍ଧାନ୍ତକୁ ଅଗ୍ରାହ୍ୟ କରାଯାଇଛି । ଏହି ମହାମନ୍ଦିର ଚୋଡଗଙ୍ଗଙ୍କ ଉତ୍କଳ ବିଜୟ ପୂର୍ବରୁ ସଂପୂର୍ଣ୍ଣ ଭାବେ ଅବସ୍ଥିତ ଥିଲା ।

ଚୋଡଗଙ୍ଗ ୧୧୦୮/୧୧୧୨ଖ୍ରୀ:ଅ:ରେ ଉତ୍କଳକୁ ଅଧିକାର କରି ଗଙ୍ଗ ସାମ୍ରାଜ୍ୟଭୁକ୍ତ କରିଥିଲେ । ଚୋଡଗଙ୍ଗ ୧୧୪୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ବରଣ କରିଥିଲେ । ଚୋଡଗଙ୍ଗଙ୍କ ପରେ ତାଙ୍କର ଚାରିପୁତ୍ର ଯଥାକ୍ରମେ ସିଂହାସନ ଆରୋହଣ କରିଥିଲେ । (୧) କାମାର୍ଣ୍ଣବ ୧୧୪୭-୫୬ ଖ୍ରୀ:ଅ:, (୨) ରାଘବ ୧୧୫୬-୭୦ ଖ୍ରୀ:ଅ:, (୩) ଦ୍ୱିତୀୟ ରାଜରାଜ ୧୧୭୦-୯୦ ଖ୍ରୀ:ଅ: (୪) ଦ୍ୱିତୀୟ ଅନଙ୍ଗଭୀମ ୧୧୯୦-୯୮ ଖ୍ରୀ: ଅ: । ଦ୍ୱିତୀୟ ଅନଙ୍ଗଭୀମଙ୍କ ପୁତ୍ର ତୃତୀୟ ରାଜରାଜ ୧୧୯୮ ରୁ ୧୨୧୧ ଖ୍ରୀ:ଅ: କଳିଙ୍ଗରେ ରାଜତ୍ୱ କରିଥିଲେ । ଏହି ତୃତୀୟ ରାଜରାଜଙ୍କ ପ୍ରଦତ୍ତ ୧୧୯୮ ଖ୍ରୀ:ଅ: ର ଦାସଗୋବା ତାମ୍ର ଶାସନରେ ଚୋଡ଼ଗଙ୍ଗଙ୍କ ପ୍ରଶସ୍ତି ପର୍ଯ୍ୟାୟରେ ନିମ୍ନୋକ୍ତ ଭାବେ ଲେଖାଯାଇଛି ।

*''ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିଶ୍ଚ ସର୍ବାଦିଶଃ*
*ଶ୍ରୋତ୍ରେ ନେତ୍ରଯୁଗଂରବୀନ୍ଦୁ ଯୁଗଳମୂର୍ଦ୍ଧାପିଚ ଦୌରସୌ*
*ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତିଃ କୋ ନାମ କର୍ତ୍ତୁଂକ୍ଷମଃ*
*ତସ୍ୟେତ୍ୟାଦି ନୃପୈରୁପେକ୍ଷିତମୟଂ ଚକ୍ରେଽଥ ଗଙ୍ଗେଶ୍ୱରଃ ॥''*

( ୨୭ ନମ୍ବର ଶ୍ଳୋକ )

ମନମୋହନ ଚକ୍ରବର୍ତ୍ତୀଙ୍କଠାରୁ ଆରମ୍ଭ କରି ବହୁ ବିଦ୍ୱାନ ଐତିହାସିକ ଶ୍ଳୋକଟିକୁ ନିମ୍ନୋକ୍ତ ଭାବେ ବାଖ୍ୟା କରି ଆସିଛନ୍ତି ।

(୧) ଚୋଡଗଙ୍ଗଙ୍କ ଉତ୍କଳ ବିଜୟ ପୂର୍ବରୁ ପୁରୀରେ ପୁରୁଷୋତ୍ତମ ବିଦ୍ୟମାନ ଥିବାବେଳେ ଏହି ପୁରୁଷୋତ୍ତମ ବିଗ୍ରହ ଅନ୍ୟତ୍ର (ସମୁଦ୍ର କୂଳରେ) ଏକ କ୍ଷୁଦ୍ର ମନ୍ଦିରରେ ପୂଜିତ ହେଉଥିଲେ ।

(୨) ଚୋଡଗଙ୍ଗଙ୍କ ପୂର୍ବରାଜାମାନେ ସର୍ବବ୍ୟାପି ପୁରୁଷୋତ୍ତମଙ୍କ ପ୍ରାଧାନ୍ୟ ଦୃଷ୍ଟିରୁ ପୁରୁଷୋତ୍ତମଙ୍କ ଉପଯୁକ୍ତ ପ୍ରାସାଦ ବା ଏକ ବୃହତ ମନ୍ଦିର ନିର୍ମାଣକୁ ଉପେକ୍ଷା କରିଥିଲେ ।

(୩) ଏପରି ଏକ ବୃହତ ମନ୍ଦିର ବା ପ୍ରାସାଦ ନିର୍ମାଣ କରିବାକୁ ଚୋଡଗଙ୍ଗଙ୍କ ପୂର୍ବରାଜାମାନଙ୍କ ମଧ୍ୟରୁ କାହାର କ୍ଷମତା ବା ସାମର୍ଥ୍ୟ ନ ଥିଲା ।

(୪) ଚୋଡଗଙ୍ଗ ଜଗନ୍ନାଥଙ୍କ ପରିଦୃଶ୍ୟମାନ ବୃହତ ମନ୍ଦିର ନିର୍ମାଣ କରିଥିଲେ ।

''ଚୋଡଗଙ୍ଗ ଜଗନ୍ନାଥ ମନ୍ଦିରର ନିର୍ମାଣ ସିଦ୍ଧାନ୍ତ'' ଗ୍ରହଣ କରିଥିବା ଐତିହାସିକମାନଙ୍କର ଉପରୋକ୍ତ ବାଖ୍ୟାରେ କେତେକ ତ୍ରୁଟି ପରିଲକ୍ଷିତ ହୁଏ ।

(୧) ଶ୍ଳୋକରେ ଚୋଡଗଙ୍ଗଙ୍କ ଉତ୍କଳ ବିଜୟ ପୂର୍ବରୁ ପୁରୀରେ ଅନ୍ୟତ୍ର ପୁରୁଷୋତ୍ତମଙ୍କ ମନ୍ଦିର ଥିବାର କୌଣସି ଉଲ୍ଲେଖ ନାହିଁ । (ଗବେଷକମାନଙ୍କ ଦ୍ୱାରା ଅନୁମାନ କରାଯାଇଥିବା

ଛି ପ୍ରାକ୍ ଚୋଡଗଙ୍ଗ ପୁରୁଷୋତ୍ତମ ମନ୍ଦିରର ଅନ୍ୟତ୍ର ଅବସ୍ଥିତି ଭଗ୍ନାବଶେଷ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ବା ...ହି ମନ୍ଦିରର ସ୍ଥିତି ସଂପର୍କରେ କୌଣସି ଐତିହାସିକ ପ୍ରାମାଣିକ ତଥ୍ୟ ଭିତ୍ତିକ ଉପାଦାନ ମିଳିନାହିଁ । ଜଗନ୍ନାଥଙ୍କ ମୁଖ୍ୟ ମନ୍ଦିରଟି ସମୁଦ୍ର କୂଳରୁ ମାତ୍ର ଏକ କିଲୋମିଟର ବ୍ୟବଧାନ ମଧ୍ୟରେ ସମୁଦ୍ର ବେଳାଭୂମିରେ ଅବସ୍ଥିତ ଥିବାରୁ ପୁରୀ ସମୁଦ୍ର କୂଳରେ ଅନ୍ୟତ୍ର ପୁରୁଷୋତ୍ତମ ମନ୍ଦିରର ଅବସ୍ଥିତିକୁ କଳ୍ପନା କରିବାର ଆବଶ୍ୟକତା ନାହିଁ ।

ଶ୍ଳୋକର ପ୍ରଥମାର୍ଦ୍ଧରେ ପୁରୁଷୋତ୍ତମଙ୍କ ଭୂଲୋକରୁ ସ୍ୱର୍ଗଲୋକ ପର୍ଯ୍ୟନ୍ତ ପରିବ୍ୟାପ୍ତିର ବର୍ଣ୍ଣନା ପୁରୁଷୋତ୍ତମଙ୍କ ଏକ ପ୍ରଶସ୍ତି ମାତ୍ର । ଶ୍ଳୋକର ଦ୍ୱିତୀୟାର୍ଦ୍ଧଟି ଐତିହାସିକ ଦୃଷ୍ଟି-କୋଣରୁ ଗୁରୁତ୍ୱପୂର୍ଣ୍ଣ । (କ) ଶ୍ଳୋକର ଦ୍ୱିତୀୟାର୍ଦ୍ଧରେ ଚୋଡଗଙ୍ଗଙ୍କ ପୂର୍ବ ରାଜାମାନେ ପୁରୁଷୋତ୍ତମଙ୍କ ପ୍ରାସାଦ ନିର୍ମାଣକୁ ଉପେକ୍ଷା କରିଥିଲେ ବୋଲି ଆଦୌ ଲେଖା ଯାଇନାହିଁ । ଏପରି ଲେଖା ହୋଇଥିଲେ, ପ୍ରାସାଦର ବ୍ୟବହାର ସର୍ବଦା ପୁଲିଙ୍ଗ ଭାବରେ ଅର୍ଥାତ 'ପ୍ରାସାଦଃ' ହୋଇ କ୍ରିୟାଟି 'ଉପେକ୍ଷିତଃ' ଲେଖାହୋଇଥାନ୍ତା । ଶ୍ଳୋକର ବାକ୍ୟ ''ଆଦି ନୃପୈଃ ଉପେକ୍ଷିତଂ ତସ୍ୟ ପୁରୁଷୋତ୍ତମସ୍ୟ ପ୍ରାସାଦଂ କଃ ନାମ ନୃପତିଃ କର୍ତ୍ତୁଂକ୍ଷମଃ ? ଅଥ ଅୟଂ ଗଙ୍ଗେଶ୍ୱରଃ ଚକ୍ରେ ଇତି ।'' ଏହି ବାକ୍ୟର କର୍ତ୍ତା 'ଗଙ୍ଗେଶ୍ୱରଃ' ପ୍ରଥମା ବିଭକ୍ତି ଏକବଚନ, କର୍ମ - 'ପ୍ରାସାଦଂ' ଦ୍ୱିତୀୟା ବିଭକ୍ତି ପୁଲିଙ୍ଗ ଏବଂ କ୍ରିୟା - 'ଚକ୍ରେ', 'କୃ' ଧାତୁର 'ଲିଟ' ଲକାର (ପରୋକ୍ଷାତୀତ କାଳ) ର ଆତ୍ମନେପଦୀ ପ୍ରଥମ ପୁରୁଷ ଏକବଚନ ରୂପ ଅଟେ । 'ତ' ପ୍ରତ୍ୟୟାନ୍ତ 'ଉପେକ୍ଷିତଂ' ପଦଟି ପ୍ରାସାଦର ବିଶେଷଣ ଅଟେ ।

ଅର୍ଥ : - ପୂର୍ବରାଜାମାନଙ୍କ ଦ୍ୱାରା ସେହି ପୁରୁଷୋତ୍ତମଙ୍କର ଉପେକ୍ଷିତ ପ୍ରାସାଦକୁ କେଉଁ ରାଜା କରିବାକୁ ସକ୍ଷମ ? ଏହା ପରେ ଏହି ଗଙ୍ଗେଶ୍ୱର କରିଥିଲେ । ଶ୍ଳୋକରେ ''ପ୍ରାସାଦଂ *****ଉପେକ୍ଷିତଂ*****'' ଉଲ୍ଲେଖ ସ୍ପଷ୍ଟ ଭାବରେ ଚୋଡଗଙ୍ଗଙ୍କ ଉତ୍କଳ ବିଜୟ ପୂର୍ବରୁ ପୁରୁଷୋତ୍ତମଙ୍କ ପ୍ରାସାଦର ଅବସ୍ଥିତିକୁ ସ୍ୱୀକାର କରେ । (ଖ) ପୁରୁଷୋତ୍ତମଙ୍କ ପ୍ରାସାଦ ପୂର୍ବରାଜାମାନଙ୍କ ଦ୍ୱାରା କିପରି ଉପେକ୍ଷିତ ହୋଇଥିଲା, ଶ୍ଳୋକରେ ତାହାର ସ୍ପଷ୍ଟ ଉଲ୍ଲେଖ ହୋଇ ନ ଥିବାରୁ 'ଉପେକ୍ଷିତଂ' ଶବ୍ଦଟିକୁ ବ୍ୟାପକ ଅର୍ଥରେ ଗ୍ରହଣ କରାଯାଇପାରେ । (ଗ) କ୍ରିୟାପଦ 'ଚକ୍ରେ' ପରୋକ୍ଷାତୀତ କାଳରେ ଲେଖାଯାଇଥିବାରୁ ଜଣାଯାଏ ଯେ, ୧ - ଶ୍ଳୋକରେ ପୁରୁଷୋତ୍ତମଙ୍କ ପ୍ରାସାଦ ସଂପର୍କିତ ବିବରଣୀ ବା ପ୍ରସଙ୍ଗ ସମ୍ବନ୍ଧରେ ଶ୍ଳୋକର ରଚୟିତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ନ ଥିଲା । ସେ ଏହା ଶୁଣିକରି ଲେଖିଥିଲେ । ଅଧିକନ୍ତୁ ଶ୍ଳୋକରେ ପ୍ରଶ୍ନବାଚକ ଖଣ୍ଡବାକ୍ୟ, ''ନୃପତିଃ ଏକା ନାମ କର୍ତ୍ତୁଂକ୍ଷମଃ ?'' ର ଉପସ୍ଥାପନା ରଚୟିତାଙ୍କର ଶ୍ଳୋକର ବିଷୟବସ୍ତୁ ସମ୍ବନ୍ଧରେ ସଂଶୟାତ୍ମକ ବିଚାରଧାରାକୁ ପରିପ୍ରକାଶ କରେ । ୨- ଶ୍ଳୋକ ଅନୁସାରେ ପୁରୁଷୋତ୍ତମଙ୍କ ବୃହତ ମନ୍ଦିରରେ ଚୋଡଗଙ୍ଗଙ୍କ ତଥାକଥିତ କାର୍ଯ୍ୟକ୍ରମ ଏବଂ ଉପରୋକ୍ତ ୨୭ ନମ୍ବର ଶ୍ଳୋକର ରଚନା ମଧ୍ୟରେ ବହୁ ସମୟର ଅନ୍ତର ଥିଲା । ଏଣୁ ୧୧୯୮ ଖ୍ରୀଷ୍ଟାବ୍ଦରେ ଦାସଗୋବା ତାମ୍ରଲେଖ ରଚନାରେ ପୁରୁଷୋତ୍ତମଙ୍କ ପ୍ରାସାଦ ସଂପର୍କିତ ୨୭ ନମ୍ବର ଶ୍ଳୋକଟି ସର୍ବପ୍ରଥମେ ରଚନା କରାଯାଇ ତାମ୍ରଲେଖରେ ପ୍ରକ୍ଷେପ କରାଯାଇଛି । ୩- ୧୧୦୮/୧୧୧୨ ଖ୍ରୀଷ୍ଟାବ୍ଦରୁ ୧୧୯୭ ଖ୍ରୀଷ୍ଟାବ୍ଦ ସମୟ ସୀମାର ଆବିଷ୍କୃତ ଓ ପ୍ରକାଶିତ କୌଣସି ତାମ୍ରଲେଖ, ଶିଳାଲେଖ ଏବଂ ତାଳପତ୍ର ପୋଥିରେ ଚୋଡଗଙ୍ଗ ବୃହତ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା ପ୍ରସଙ୍ଗର ସାମାନ୍ୟତମ ପ୍ରତ୍ୟକ୍ଷ ବା ପରୋକ୍ଷ ସୂଚନା ନାହିଁ । ୪- ୧୯୯୩ ମସିହାରେ ଚୌଦ୍ୱାରରୁ କାମାର୍ଣ୍ଣବଙ୍କ ୧୧୪୭-୪୮ ଖ୍ରୀଷ୍ଟାବ୍ଦର ତାମ୍ର ଶାସନ ଆବିଷ୍କୃତ ହେବାପରେ, ତାହା 'ଝଙ୍କାର' ନଭେମ୍ବର ୧୯୯୪ ସଂଖ୍ୟାରେ ପ୍ରକାଶିତ ହୋଇଛି । ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବ ଉତ୍କଳରେ ପିତାଙ୍କର ସମସ୍ତ କୀର୍ତ୍ତିର ଚାକ୍ଷୁଷ ସାକ୍ଷୀ (eye witness) ଥିଲେ । କାମାର୍ଣ୍ଣବଙ୍କ ପ୍ରଦତ୍ତ ତାମ୍ର ଶାସନରେ ପିତାଙ୍କର (ବୃହତ ଜଗନ୍ନାଥ ମନ୍ଦିର ନିର୍ମାଣ) ସର୍ବଶ୍ରେଷ୍ଠ ମହାନ କୀର୍ତ୍ତି ଟି, ଚୋଡଗଙ୍ଗଙ୍କ ପ୍ରଶସ୍ତି ଗାନ ପର୍ଯ୍ୟାୟରେ ଅଗ୍ରାଧିକାର ପାଇବା ସ୍ୱାଭାବିକ; କିନ୍ତୁ କାମାର୍ଣ୍ଣବଙ୍କ ଚୌଦ୍ୱାର ତାମ୍ର ଶାସନରେ ଚୋଡଗଙ୍ଗ ବୃହତ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା କଥା ଲେଖାହୋଇନାହିଁ ।

୧୧୯୮ ଖ୍ରୀଷ୍ଟାବ୍ଦର ଦାସଗୋବା ତାମ୍ରଶାସନ ୧୧୪୭-୪୮ ଖ୍ରୀଷ୍ଟାବ୍ଦର କାମାର୍ଣ୍ଣବଙ୍କ ଚୌଦ୍ୱାର ତାମ୍ରଶାସନର ଲିଖନ ଶୈଳୀକୁ ଅନୁକରଣ କରୁଥିବା ବେଳେ ଦାସଗୋବା ତାମ୍ରଶାସନ ରଚନାରେ କାମାର୍ଣ୍ଣବଙ୍କ ତାମ୍ରଶାସନର ୧ମ ଧାଡିରୁ ୭୨ ଧାଡି ପର୍ଯ୍ୟନ୍ତ ପ୍ରଶସ୍ତି ଶ୍ଳୋକଗୁଡିକର ନକଲ କରାଯାଇଛି । ଦାସଗୋବା ତାମ୍ରଶାସନରେ କାମାର୍ଣ୍ଣବଙ୍କ ତାମ୍ରଶାସନର ଉପରୋକ୍ତ ଉଦ୍ଧୃତାଂଶ ମଧ୍ୟରେ କେତେକ ନୂତନ ଶ୍ଳୋକ ପ୍ରକ୍ଷେପ କରାଯାଇଛି । ଦାସଗୋବା ତାମ୍ରଶାସନର ଏହି ପ୍ରକ୍ଷିପ୍ତ ଶ୍ଳୋକମାନଙ୍କ ମଧ୍ୟରୁ ପୁରୁଷୋତ୍ତମଙ୍କ ପ୍ରାସାଦ ସଂପର୍କିତ ୨୭ ନମ୍ବର ଶ୍ଳୋକଟି ଅନ୍ୟତମ ଅଟେ । ଅଧିକନ୍ତୁ ଦାସଗୋବା ତାମ୍ରଶାସନରେ ଚୋଡଗଙ୍ଗଙ୍କ ସାମରିକ ବିବରଣୀ ମଧ୍ୟରେ ଧାର୍ମିକ କୀର୍ତ୍ତିର ପ୍ରକ୍ଷିପ୍ତ ୨୭ ନମ୍ବର ଓ ୨୮ ନମ୍ବର ପ୍ରଶସ୍ତି ଶ୍ଳୋକଦ୍ୱୟ ତା'ର ପୂର୍ବାପର ପ୍ରାସଙ୍ଗିକତା ହରାଇଛି ।

୫- ବାଇଶି ପାହାଚ ଉଚ୍ଚତା ବିଶିଷ୍ଟ ଏବଂ କୂର୍ମବେଢ଼ା ପରିବେଷ୍ଟିତ ମନୁଷ୍ୟକୃତ ଏକ ଉତ୍ତୁଙ୍ଗ ବେଦି ବା ଭୂମି ଶଯ୍ୟାର ମଝିରେ ବୃହତ୍ ଜଗନ୍ନାଥ ମନ୍ଦିର ଦଣ୍ଡାୟମାନ । ଜଗନ୍ନାଥ ମନ୍ଦିରକୁ ଘେରି ଏହି ଉତ୍ତୁଙ୍ଗ ଭୂମିଶଯ୍ୟା ଉପରେ ବହୁ କ୍ଷୁଦ୍ରକାୟ ମନ୍ଦିର ପରବର୍ତ୍ତୀ ଭିନ୍ନ ଭିନ୍ନ ସମୟରେ ନିର୍ମିତ ହୋଇଛି । ଜଗନ୍ନାଥଙ୍କ ମୁଖ୍ୟ ମନ୍ଦିରର ଦକ୍ଷିଣ-ପୂର୍ବରେ ମାତ୍ର ୬୫ ଫୁଟ ଦୂରରେ ଏବଂ ମୁକ୍ତି ମଣ୍ଡପର

ପଶ୍ଚିମରେ ମାତ୍ର ସାଢ଼େ ୩ ଫୁଟ ଦୂରରେ ନୃସିଂହ ମନ୍ଦିର ଅବସ୍ଥିତ । ନୃସିଂହ ମନ୍ଦିର ଦ୍ୱାରବନ୍ଧର ବିଶାଳ ପଥର ଉପରେ ଉତ୍କୀର୍ଣ୍ଣ ସର୍ବପ୍ରାଚୀନ ୧୧୧୩ ଖ୍ରୀଷ୍ଟାବ୍ଦର ଶିଳାଲେଖ ଅନୁସାରେ ଏହି ମନ୍ଦିର ୧୧୧୩ ଖ୍ରୀଷ୍ଟାବ୍ଦରେ କୂର୍ମବେଢ଼ା ପରିବେଷ୍ଟିତ ଉତ୍ତୁଙ୍ଗ ଭୂମିଶଯ୍ୟା (Raised platform) ଉପରେ ଦଣ୍ଡାୟମାନ ଥିବାର ସିଦ୍ଧାନ୍ତଟି ସର୍ବସମ୍ମତ ଅଟେ । ଯଦି ୧୧୧୩ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ସମୟରେ ଚୋଡଗଙ୍ଗ ଜଗନ୍ନାଥଙ୍କ ବିମାନ ଓ ଜଗମୋହନକୁ ନିର୍ମାଣ କରିଥିଲେ ତେବେ ଏହି ବୃହତ ମନ୍ଦିର ପାଇଁ ଆବଶ୍ୟକୀୟ ଗଭୀର ଓ ପ୍ରସାରିତ ମୂଳଦୁଆ ଖୋଳାହେବା ବେଳେ ମାତ୍ର ୬୫ ଫୁଟ ଦୂରରେ ୧୧୧୩ ରେ ଥିବା ଏହି କ୍ଷୁଦ୍ରକାୟ ନୃସିଂହ ମନ୍ଦିର କିପରି ତା'ର ସ୍ଥିତି ରକ୍ଷା କରିପାରିଲା ?

ତତ୍କାଳୀନ ନିର୍ମାଣ ଜ୍ଞାନ କୌଶଳ ଦୃଷ୍ଟିରୁ ବୃହତ ମନ୍ଦିର ନିର୍ମାଣ ସମୟରେ ନିମ୍ନଭାଗରୁ ନିର୍ମିତ ଅଂଶକୁ ମାଟି ବା ବାଲି ଦ୍ୱାରା ପୋତି ଦିଆଯାଇ ଏକ ଢ଼ାଲୁ ବା ଗଡାଣିଆ ଭୂମି ସୃଷ୍ଟି କରାଯାଉଥିଲା । ଏହି ଢ଼ାଲୁ ଭୂମି (Earthen Ramp) ଉପରେ ବୃହତକାୟ ଓଜନଦାର ପଥରଖଣ୍ଡଗୁଡ଼ିକୁ ମନ୍ଦିରର ଉପରସ୍ଥ ନିର୍ମାଣ ସ୍ଥଳକୁ ସହଜରେ ବୋହି ନିଆଯାଉଥିଲା । ଏହି ପଦ୍ଧତିଟି ଯଦି ଜଗନ୍ନାଥଙ୍କ ବିମାନ ନିର୍ମାଣରେ ଅନୁସୃତ ହୋଇଥିବ, ତେବେ ମନ୍ଦିରର ମୁଣ୍ଡି ମରାଯାଇ କଳସ ସ୍ଥାପନ ବେଳକୁ ସଂପୂର୍ଣ୍ଣ ମନ୍ଦିର ଏବଂ ଏହାର ଚତୁଃ ପାର୍ଶ୍ୱର ବହୁ ଅଞ୍ଚଳ ମାଟି ବା ବାଲି ଦ୍ୱାରା ବହୁ ବର୍ଷ ପୋତିହୋଇ ରହିଥିବ ନିଶ୍ଚିତ । ୧୧୧୩ ଖ୍ରୀ: ଅ: ରୁ ୧୧୪୭ ଖ୍ରୀ: ଅ: ମଧ୍ୟରେ ନୃସିଂହ ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ ଭିନ୍ନ ଭିନ୍ନ ଖ୍ରୀଷ୍ଟାବ୍ଦର ଶିଳାଲେଖଗୁଡ଼ିକ ସ୍ପଷ୍ଟ ଭାବେ ପ୍ରମାଣ କରେ ଯେ, ୧୧୧୩ ଖ୍ରୀ: ଅ: ରୁ ୧୧୪୭ ଖ୍ରୀ: ଅ: ପର୍ଯ୍ୟନ୍ତ ନୃସିଂହ ମନ୍ଦିର ମାଟି ବା ବାଲିରେ ପୋତିହୋଇ ରହିନଥିଲା । ଚୋଡଗଙ୍ଗ ଯଦି ୧୧୧୩ ରୁ ୧୧୪୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜଗନ୍ନାଥଙ୍କ ବିମାନ ଓ ଜଗମୋହନକୁ ନିର୍ମାଣ କରିଥିଲେ ତେବେ ଉପରୋକ୍ତ ନିର୍ମାଣ ଜ୍ଞାନକୌଶଳ ପରିବର୍ତ୍ତେ କେଉଁ ଉପାୟ ବା ପଦ୍ଧତି ଅନୁସୃତ ହୋଇ ବୃହତକାୟ ପଥରଖଣ୍ଡଗୁଡ଼ିକ ଉପରକୁ ଉଠାଯାଇ ବଡଦେଉଳ ନିର୍ମାଣ କରାଯାଇଥିଲା ?

ଦାସଗୋବା ତାମ୍ରଶାସନର ୨୭ ନମ୍ବର ଶ୍ଳୋକ ପରି ୨୮ ନମ୍ବର ଶ୍ଳୋକଟି ମଧ୍ୟ ଏକ ପ୍ରକ୍ଷିପ୍ତ ଶ୍ଳୋକ ।

*"ଲକ୍ଷ୍ମୀ ଜନ୍ମଗୃହଂ ପୟୋନିଧିରସୌ ସମ୍ଭାବତସ୍ୟ ସ୍ଥିତିନୋଧାମ୍ନି*
*ଶ୍ୱଶୁରସ୍ୟ ପ୍ରୁଜ୍ୟତ ଇତି କ୍ଷୀରାବ୍ଧିବାସା ଧ୍ରୁବଂ ।*
*ନିର୍ବିନ୍ନଃ ପୁରୁଷୋତ୍ତମଃ ପ୍ରମୁଦିତ ସ୍ତଦ୍ଧାମ ଲାଭାତ୍*
*ରମାପ୍ୟେତଦଭର୍ତ୍ତୁ ଗୃହଂ ବରଂ ପିତୃଗୃହାତ୍ ପ୍ରାପ୍ୟ*
*ପ୍ରମୋଦାନ୍ୱିତା" ।।*
(୨୮ ନମ୍ବର ଶ୍ଳୋକ)

ଏହି ଶ୍ଳୋକରେ ପୁରୁଷୋତ୍ତମ ଏବଂ ତାଙ୍କର ପତ୍ନୀ ଲକ୍ଷ୍ମୀଙ୍କ ସଂପର୍କରେ ଅତିରଞ୍ଜିତ ତଥା ରହସ୍ୟପୂର୍ଣ୍ଣ ବର୍ଣ୍ଣନା କରାଯାଇଥିବା ବେଳେ, ଐତିହାସିକ ଦୃଷ୍ଟିକୋଣରୁ ଏହି ଶ୍ଳୋକଟି ଜଗନ୍ନାଥ ମନ୍ଦିର ବେଢ଼ାରେ ଅବସ୍ଥିତ ଲକ୍ଷ୍ମୀ ମନ୍ଦିରର ନିର୍ମାଣକୁ ଲକ୍ଷ୍ୟ କରି ଲେଖାଯାଇଥିବା ଅନୁମେୟ ହୁଏ । ଲକ୍ଷ୍ମୀ ମନ୍ଦିରଟି ଦୁଇଟି ପର୍ଯ୍ୟାୟରେ ଭିନ୍ନ ଭିନ୍ନ ସମୟରେ ନିର୍ମିତ । ପ୍ରଥମ ପର୍ଯ୍ୟାୟରେ ଉଚ୍ଚକୋଟୀର କାରୁକାର୍ଯ୍ୟପୂର୍ଣ୍ଣ ବାଡଟି ନିର୍ମିତ ହୋଇଥିବା ବେଳେ, ପରବର୍ତ୍ତୀ ସମୟରେ ଦ୍ୱିତୀୟ ପର୍ଯ୍ୟାୟରେ କାରୁକାର୍ଯ୍ୟବିହୀନ ଶିଖର (ଗଣ୍ଡି ଓ ମସ୍ତକ) ଟି ନିର୍ମିତ ହୋଇଛି । ସମ୍ଭବତଃ ଚୋଡଗଙ୍ଗ ଲକ୍ଷ୍ମୀ ମନ୍ଦିରର ଏହି ଦ୍ୱିତୀୟ ପର୍ଯ୍ୟାୟ ଶିଖର ନିର୍ମାଣ କରି ଲକ୍ଷ୍ମୀଙ୍କୁ ତାଙ୍କ ସ୍ୱାମୀ ଗୃହରେ ପ୍ରତିଷ୍ଠା କରିଥିଲେ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ଚୋଡଗଙ୍ଗ ବୃହତ ଜଗନ୍ନାଥ ମନ୍ଦିରର ନିର୍ମାତା ନୁହନ୍ତି । ଏହି ମହାମନ୍ଦିର ଚୋଡଗଙ୍ଗଙ୍କ ଉତ୍କଳ ବିଜୟ ପୂର୍ବରୁ ସଂପୂର୍ଣ୍ଣ ଅବସ୍ଥିତ ଥିଲା । ପୂର୍ବରାଜାମାନଙ୍କ ଦ୍ୱାରା ଉପେକ୍ଷିତ ଏହି ମନ୍ଦିରରେ ବା ମନ୍ଦିର ପରିସରରେ ଚୋଡଗଙ୍ଗ ସଂରକ୍ଷଣ ବା ଆବଶ୍ୟକୀୟ ନିର୍ମାଣ କରିଥିଲେ ।

ଚୌଦ୍ୱାର - ୭୫୪୦୨୫, କଟକ

ତଥ୍ୟ ସୂଚୀ


୧- ତୃତୀୟ ରାଜରାଜଙ୍କ ଦାସଗୋବା ତାମ୍ରଶାସନ, ୧୧୯୮ ଖ୍ରୀଷ୍ଟାବ୍ଦ (Edited by Dr. D.C. Sircar in E.I. Vol - XXXI, Pt. - VI) ।

୨- ସପ୍ତମ କାମାର୍ଣ୍ଣବଙ୍କ ଚୌଦ୍ୱାର ତାମ୍ରଶାସନ ୧୧୪୭-୪୮ ଖ୍ରୀଷ୍ଟାବ୍ଦ- (ରବି ରାୟ) 'ଝଙ୍କାର' ନରେମ୍ବର ୧୯୯୪ ସଂଖ୍ୟା, ପୃଷ୍ଠା - ୯୦୧ ରୁ ୯୧୫ ।

୩- Early Stone temples of Orissa , Page - 29, 30, Vidya Dehejia Vikas Publishing House, Pvt. Ltd. New Delhi 1979.

୪. Inscriptions of the Temples of Puri and Origin of Sri Purusottama jagannath, Vol- I, Pt. - I, Dr. S.N. Rajguru, Ist edition 1992, Jagannath Sanskrit Visva Vidyalaya, Srivihar, Puri.

୫. Conservation of Lord Jagannath Temple, Puri- A report by Dr. G.C. Chauley Superintending Archaeologist, A.S.I. BBSR circle Nov. 1993.

# ପଲ୍ଲୀ ଅଞ୍ଚଳରେ ସାଂସ୍କୃତିକ ସଚେତନତା

**ସରୋଜିନୀ ମିଶ୍ର**

ଅସୀମ ବୁଦ୍ଧିର ଅଧିକାରୀ ମନୁଷ୍ୟ କେଉଁ ଅନାଦି କାଳରୁ ଗଢି ଚାଲିଛି ତା'ର ସଭ୍ୟତା ଓ ସଂସ୍କୃତି । ଯୁଗ ଯୁଗ ଧରି ଏହା ପରିବର୍ତ୍ତନର ବିଭିନ୍ନ ସ୍ତର ଦେଇ ଗତି କରି ଚାଲିଛି । ପଲ୍ଲୀ ଅଞ୍ଚଳରେ ସାଂସ୍କୃତିକ ସଚେତନତା ସମ୍ପର୍କରେ ଆଲୋଚନା ପୂର୍ବରୁ ସଂସ୍କୃତି କ'ଣ ଜାଣିବା ନିତାନ୍ତ ଆବଶ୍ୟକ । 'ସଂସ୍କୃତି ' ଏପରି ଏକ ଶବ୍ଦ, ଯାହାର ଏକ ନିର୍ଦ୍ଦିଷ୍ଟ ଆଭିଧାନିକ ଅର୍ଥ ପାଇବା ଅସମ୍ଭବ । ଏହା ଏକ ଅନୁଭବର ବିଷୟ । ଏହା ମନୁଷ୍ୟର ଆଚାର-ବିଚାରରେ, ଲୋକ-ଚରିତ୍ରରେ, ଶିକ୍ଷା-ଦୀକ୍ଷାରେ ତଥା ଧର୍ମ ଧାରଣାରେ ଅନୁଭୂତ ହୁଏ । ମଣିଷ ନିଜ ଅଜାଣତରେ ନିଜକୁ ସଂସ୍କୃତିର ସ୍ରୋତରେ ଭସାଇ ଦିଏ ।

ସଂସ୍କୃତିର ଦୁଇଟି ରୂପ ପ୍ରକଟିତ ହୁଏ । ଗୋଟିଏ ତା'ର ବାହ୍ୟରୂପ ବା ସ୍ଥୂଳ ରୂପ, ଯାହା ପ୍ରତିଫଳିତ ହୁଏ ସାମାଜିକ ଆଚାର ବିଚାର, ଚାଲିଚଳଣୀରେ । ଅନ୍ୟଟି ଅନ୍ତଃରୂପ ବା ସୂକ୍ଷ୍ମରୂପ । ଏହି ରୂପରେ ଆତ୍ମପ୍ରକାଶ କରିଥାଏ - କଳା, ସାହିତ୍ୟ, ସଙ୍ଗୀତ ଆଦି ବିଭବ । ଏଥିରୁ ସ୍ପଷ୍ଟ ଭାବରେ ବୁଝିହୁଏ, ସଂସ୍କୃତିର ଅର୍ଥ କେତେ ଗଭୀର ଓ ପରିସର କେତେ ବ୍ୟାପକ । ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ''ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'' ଗ୍ରନ୍ଥରେ ଲେଖିଛନ୍ତି -" ଚାହାଣୀ, ଚଳଣୀ ଓ ଚମକ ଏହି ତିନୋଟିରେ ସମାଜର ସଂସ୍କୃତି ଜଣାପଡେ । ସର୍ବତୋଭାବେ ଦେଖିବାକୁ ଗଲେ ସଂସ୍କୃତି ହେଉଛି ପ୍ରଚଳିତ ସମାଜର ଚାଲି-ଚଳଣୀ, ଆଚାର-ବିଚାର, ଚିନ୍ତା-ଚେତନା, ଜୀବନ-ଦର୍ଶନ, ଶିକ୍ଷା-ଦୀକ୍ଷା, କଳା-ସାହିତ୍ୟ ଓ ନୃତ୍ୟ-ଗୀତର ଏକ ମନୋଜ୍ଞ ସମାବେଶ ।

ଯୁଗେ ଯୁଗେ ଉଦ୍ଭବୀୟ ସଂସ୍କୃତିର ମହନୀୟତା ପ୍ରତିଫଳିତ ହୋଇଛି ଭାରତୀୟ ସଂସ୍କୃତିରେ । ଭାରତୀୟ ସଂସ୍କୃତି ହୋଇଛି ବିଶ୍ୱ ବନ୍ଦନୀୟ । ଯେତେବେଳେ ପୃଥିବୀରେ ଅଳ୍ପ କେତୋଟି ସଭ୍ୟତା ଗଢ଼ି ଉଠିଥିଲା, ସେତେବେଳେ ଆମ ଭାରତୀୟ ସଂସ୍କୃତି ଉଲ୍ଲେଖନୀୟ ରୂପରେଖ ନେଇ ସାରିଥିଲା । ଏହାର ମୂଳଦୁଆ ପକେଇଥିଲେ ବୈଦିକ ଯୁଗର ମୁନିଋଷିମାନେ । ନିଘଞ୍ଚ ଅରଣ୍ୟରେ ତପସ୍ୟା କରୁଥିଲେ ସେମାନେ । ସେହି ତପଃ ଶକ୍ତିବଳରେ ସେମାନେ ରଚନା କରୁଥିଲେ - ବେଦ-ବେଦାନ୍ତ, ଉପନିଷଦ ଓ ପୁରାଣ ଆଦି ଅମୂଲ୍ୟ ଗ୍ରନ୍ଥ । ସେଥିରେ ବର୍ଣ୍ଣିତ ଜଟିଳ ତତ୍ତ୍ୱସବୁ କ୍ରମଶଃ ସହଜ-ସରଳ ଭାଷାରେ ପୁରାଣ ଆକାରରେ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚିଲା

ଧର୍ମଭାବ ଆମ ଭାରତର ଆତ୍ମା । ଈଶ୍ୱର ଉପାସନାକୁ ଆମେ ଧର୍ମ କହୁ । ପୁଣି କର୍ତ୍ତବ୍ୟ ପାଳନକୁ ଆମେ ଜୀବନର ଶ୍ରେଷ୍ଠ ଧର୍ମ ରୂପେ ମାନି ନେଉ । ଅନ୍ୟ ଧର୍ମ ପ୍ରତି ଆମ ମନରେ ଶ୍ରଦ୍ଧା ଓ ସମ୍ମାନ, ମାନବିକତା, ନୈତିକତା, କର୍ତ୍ତବ୍ୟବୋଧ, ଗୁରୁଜନରେ ଭକ୍ତି ଓ ଲଘୁଜନରେ ପ୍ରୀତି ଆଦି ମହତଗୁଣର ମହାମନ୍ତ୍ର ଆମେ ଯେଉଁଥିରୁ ଶିଖିଛୁ ସେ ହେଉଛି ଆମର ମହାକାବ୍ୟ ମହାଭାରତ, ମହାପୁରାଣ ରାମାୟଣ । ସମସ୍ତ ନୀତି-ଅନୀତି, ପାପ-ପୁଣ୍ୟ, କର୍ମ-ଅକର୍ମର ଭଣ୍ଡାରର ଆମର ଶ୍ରୀମଦ୍ ଭଗବତଗୀତା । ଆମ ସଂସ୍କୃତିର ଏହି ବାରାଗଛଟିରେ ପାଣି ଦେଉଥିଲେ ଗ୍ରାମେ ଗ୍ରାମେ ଗଢ଼ି ଉଠିଥିବା ଭାଗବତ ଟୁଙ୍ଗୀର ପୁରାଣ ପଣ୍ଡାମାନେ ସୁଲଳିତ କଣ୍ଠରେ ପୁରାଣ ପାଠ କରୁଥିଲେ । ସେହି ପୁରାଣର ଆକର୍ଷଣରେ ଟାଣି ହୋଇ ଆସୁଥିଲେ ଅନେକ ନରନାରୀ । ଭାବର ବିନିମୟ ହେଉଥିଲା । ଖାଲି ଧର୍ମ ବିଶ୍ୱାସ ମଧ୍ୟରେ ସୀମିତ ନ ଥିଲା ଆମର ସଂସ୍କୃତି । ମା'ର ବାତ୍ସଲ୍ୟବୋଳା ଧୋବାଲା ଗୀତ, ଶିଶୁର ମନଭୁଲାଣିଆ ଇଚିକିଲିର ଛନ୍ଦ, ଉଦୁଉଦୁମା ତାଳ ଗୋଟମାର ତାଳ, ଚପଳ-ଚଞ୍ଚଳ କିଶୋରୀର ମନଛୁଆଁ ରଜଦୋଳି ଗୀତ, କୁଆଁର ପୁନେଇଁର ଫୁଲବଉଳବେଣୀ ଗୀତ ତଥା କନ୍ୟାବିଦାୟ ବେଳର କାନ୍ଦଣା ଗୀତର ଲହରୀ ଦେଇ ଫୁଟିଉଠିଥିଲା ସେ ଯୁଗର କଳା-ସଂସ୍କୃତିର କଳିକା । ଆହୁରି ମଧ୍ୟ ହଳିଆ, ଶଗଡିଆ ତଥା ନାଉରୀଆ ଆଦି ପ୍ରତିଟି ଜୀବନ ସଂଗୀତର ତାଳେ ତାଳେ କର୍ମମୁଖର ହୋଇଥିଲା । ଦାସ କାଠିଆ ଓ ପାଲା ମଧ୍ୟରେ ପ୍ରକାଶ ପାଉଥିଲା ଆମ ସଂସ୍କୃତିର ଅଭିବ୍ୟକ୍ତି ।

ପଲ୍ଲୀ ହେଉଛି ଭାରତୀୟ ଜୀବନର ପ୍ରାଣ କେନ୍ଦ୍ର । ଏକ ଗ୍ରାମ ବହୁଳ ଦେଶ ଭାବରେ ଆମ ଭାରତବର୍ଷ ସୁପରିଚିତ । କିନ୍ତୁ ସମୟର ରଥଚକତଳେ ଏକଦା ଆମ ପଲ୍ଲୀ ଜୀବନର ଛନ୍ଦ କିଛି

ବର୍ଷ ପାଇଁ ହଜି ଯାଉଥିଲା । ପରାଧୀନତାର କଷଣ ସେହି କିଛି ବର୍ଷ ପାଇଁ ଆମର ପ୍ରାଣ-ପ୍ରାଚୁର୍ଯ୍ୟ, ସୁଖ-ସ୍ୱାଚ୍ଛନ୍ଦ୍ୟ ଲୁପ୍ତ ହୋଇ ଯାଇଥିଲା । ସ୍ୱାଧୀନତା କୋଣ ଅନୁକୋଣକୁ ଆଲୋକିତ କଲା । ସୁପ୍ତ ଶକ୍ତି ଜାଗ୍ରତ ହେଲା । ଆଜିର ପଲ୍ଲୀ ଜୀବନକୁ ଅନୁଧ୍ୟାନ କଲେ ସାଂସ୍କୃତିକ ପ୍ରଗତିର ଚିହ୍ନ ସ୍ପଷ୍ଟ ବାରି ହୋଇପଡେ । କାଲି ଓ ଆଜିକୁ ତୁଳନା କଲେ ଆକାଶ-ପାତାଳ ପରି ଲାଗେ । ଆଜିର ନବ୍ୟ-ସଭ୍ୟ ସୁସଂସ୍କୃତ ସମାଜ ଯୁଗ ଯୁଗ ବ୍ୟାପୀ ବିବର୍ତ୍ତନର ପରିଣତି । ଆଜି ପୁର ପଲ୍ଲୀରେ ସାଂସ୍କୃତିକ ସଚେତନତାର ସ୍ରୋତ ପ୍ରବାହିତ ହେଉଅଛି । ଦିନ ଥିଲା ଗାଁ ଗହଳିରେ ଶିକ୍ଷାର ପ୍ରସାର ହୋଇ ନ ଥିଲା । ରାସ୍ତାଘାଟ ନ ଥିଲା । ସଭ୍ୟତାର ଆଲୋକ ଅନେକ ଅଞ୍ଚଳକୁ ସ୍ପର୍ଶ କରି ନ ଥିଲା । ଧର୍ମ ଭୀରୁତା ସହ ଅସଂଖ୍ୟ କୁସଂସ୍କାର ବସା ବାନ୍ଧିଥିଲା ମଣିଷର ମନରେ । ଯେଉଁ ଧର୍ମ ମଣିଷକୁ ଉର୍ଦ୍ଧ୍ୱଗାମୀ କରାଇ ପାରେ, ସେହି ଧର୍ମ ମଣିଷକୁ ରସାତଳରେ ଚାପି ଦେଉଥିଲା । ସେତେବେଳେ ଝିଅ ବୋହୂଙ୍କ ଉପରେ ନାନା କଟକଣା ଥିଲା । କିନ୍ତୁ ଆଜିର ସୁଶିକ୍ଷିତା, ପରିମାର୍ଜିତା, ସ୍ୱାଧୀନଚେତା ଝିଅ ବୋହୂଙ୍କୁ ଦେଖିଲେ ସଚେତନତାର ମୂର୍ତ୍ତିପରି ପ୍ରତୀୟମାନ ହୁଅନ୍ତି ସେମାନେ ।

ସେ ଯୁଗରେ ଅଧିକାଂଶ ଲୋକ ଅଶିକ୍ଷାର ସୀମାରେଖା ତଳେ ରହିଥିଲେ । କିନ୍ତୁ ଆଜି ସରକାରୀ ପ୍ରଚେଷ୍ଟାରେ ଗାଁ ଗହଳିର ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଶିକ୍ଷା ସମସ୍ତ ପ୍ରଗତିର ମୂଳମନ୍ତ୍ର । ସଚେତନତାର ଆଧାର । ଶିକ୍ଷାର ପ୍ରସାର ଫଳରେ ଆଜି ମଣିଷର ଜୀବନ ଧାରଣର ମାନ ବଦଳି ଯାଇଛି । ଆଜି ଗରିବ-ମୂଲିଆ ଶ୍ରେଣୀର ବାପା-ମା ମଧ୍ୟ କଠିନ ପରିଶ୍ରମ କରି ତାଙ୍କର ପିଲାଙ୍କ ପାଇଁ ପାଠ ପଢ଼ାର ଉପକରଣ ସହିତ ଟିଉସନ୍ ଫିସ୍ ଯୋଗାଡ କରୁଛନ୍ତି । ଆଗାମୀ ଭବିଷ୍ୟତ ପାଇଁ ଆଜିର ଏ ପ୍ରୟାସ ବେଶ୍ ଅଭିନନ୍ଦନୀୟ । ଆଜି ଗ୍ରାମାଞ୍ଚଳରେ ଆଶାତୀତ ଭାବରେ ଶିକ୍ଷାର ପ୍ରସାର ଘଟିଛି ।

ଦିନେ ଚିଠି ଖଣ୍ଡେ ପଢ଼ି ଦେବାକୁ ଜଣେ ଶିକ୍ଷିତ ଲୋକ ଖୋଜା ହେଉଥିଲା । ମାତ୍ର ଦିନ ଆସିବ ଜଣେ ଅଶିକ୍ଷିତ ଲୋକ ମିଳିବା କଷ୍ଟକର ହୋଇ ପଡିବ । ଗାଁରୁ ସହର ପର୍ଯ୍ୟନ୍ତ ସରକାରୀ ସ୍କୁଲ ବ୍ୟତୀତ ଅନେକ ବେସରକାରୀ ଇଂଲିଶ ମିଡିୟମ ସ୍କୁଲ, ନାଚ-ଗୀତ ଓ ଚିତ୍ରକଳା ଶିକ୍ଷା କେନ୍ଦ୍ର ଖୋଲା ଗଲାଣି । ସେହିସବୁ ବିଦ୍ୟାଳୟମାନଙ୍କରେ ଆମ ଗାଁ ଗହଳିର ପିଲାମାନେ ଶିକ୍ଷା ଲାଭ କରି ନିଜସ୍ୱ ପ୍ରତିଭାର ବିକାଶ ସାଧନ କରିପାରୁଛନ୍ତି । ଏହା ଆମର ସାଂସ୍କୃତିକ ସଚେତନତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଦିନ ଥିଲା ଲୋକେ ପରିବାର ପରିଚ୍ଛନ୍ନତା ସଂପର୍କରେ ଆଦୌ ସଚେତନ ନ ଥିଲେ । ପ୍ରତିବର୍ଷ ହଇଜା ମହାମାରୀ ପରି ସଂକ୍ରାମକ ରୋଗରେ ଅସଂଖ୍ୟ ଜୀବନ ହାନି ଘଟୁଥିଲା । ଆଜି କିନ୍ତୁ ଲୋକେ ଯଥେଷ୍ଟ ସଚେତନ । ନିଜର ପରିବେଶର ସୁରକ୍ଷା ଓ ପରିଚ୍ଛନ୍ନତା ପ୍ରତି ବେଶ୍ ସଜାଗ ହେଲେଣି । ସରକାରୀ ସ୍ୱାସ୍ଥ୍ୟକେନ୍ଦ୍ରର ଉପଯୋଗ କରୁଛନ୍ତି । ସ୍ୱାସ୍ଥ୍ୟର ଯତ୍ନ ସମ୍ପର୍କରେ ଢେର ଅଧିକ ଜାଣିଲେଣି ।

ରାତି ପାହିବା ମାତ୍ରେ ନିତ୍ୟକର୍ମ ସାରିବାକୁ ପଡିଆ ପୋଖରୀକୁ ଚାଲିଯାଉ ଥିବା ଲୋକେ ଏବେ ନିଜ ନିଜ ଘରେ ପାଇଖାନା-ଗାଧୁଆଘର ତିଆରି କରି ଚଳିବାକୁ ଶିଖିଲେଣି । ଅଳିଆ ଆବର୍ଜନା ଏଣେ ତେଣେ ପକାଇ ରୋଗ ଜୀବାଣୁ ନ ବଢ଼ାଇ ଏବେ ଲୋକେ କମ୍ପୋଷ୍ଟ ତିଆରି କରି ଲାଭବାନ ହେବାକୁ ଶିଖିଲେଣି । ଉନ୍ନତ ସାର ବିହନ ପ୍ରୟୋଗ କରି ଅଧିକ ଅମଳ କରି ନିଜର ଚିନ୍ତା ଓ ଚେତନାର ପରିସରକୁ ବଢ଼ାଇ ପାରିଛନ୍ତି ଚାଷୀଭାଇମାନେ । ସାରାଦିନ ବିଲ ବାଡିରେ ଖଟି ସନ୍ଧ୍ୟାବେଳୁ ବିଛଣାକୁ ଚାଲିଯାଉଥିବା ଚାଷୀଭାଇମାନେ ଏବେ ସନ୍ଧ୍ୟାବେଳେ ଯାଉଛନ୍ତି ପ୍ରୌଢ଼ ଶିକ୍ଷା କେନ୍ଦ୍ରକୁ । ଲେଖି ପଢ଼ି ଶିଖିବା ସଙ୍ଗେ ସଙ୍ଗେ ରେଡିଓ ବା ଟେଲିଭିଜନ୍‌ରୁ ନୂଆ ନୂଆ କଥା ଜାଣୁଛନ୍ତି ଓ ଶିଖୁଛନ୍ତି । ଏହିସବୁ ପ୍ରଗତି ମଣିଷର ସାଂସ୍କୃତିକ ଚେତନାର ପରିସରକୁ ବଢ଼ାଇ ଦେଇଛି ଆଶାତୀତ ଭାବରେ । ରାସ୍ତା ନିର୍ମାଣ, ଡାକ ତାରର ଯୋଗାଯୋଗ, ବିଦ୍ୟୁତ ସଂଯୋଗ ଆଦି ଦ୍ୱାରା ଗ୍ରାମାଞ୍ଚଳର ଉନ୍ନତି ଆହୁରି ସହଜ ହୋଇ ପାରିଛି । ସାଂସ୍କୃତିକ ବିକାଶ ତ୍ୱରାନ୍ୱିତ ହୋଇ ପାରିଛି ।

ଜର୍ସିଗାଈ ପାଳନ, ମାଛଚାଷ, କୁକୁଡା ଚାଷ, ଛତୁ ଚାଷ, ନାନା ପ୍ରକାର ହସ୍ତକର୍ମ ଆଦିର ପ୍ରସାରଣ ଫଳରେ ପଲ୍ଲୀରୁ ନଗର ପର୍ଯ୍ୟନ୍ତ ସବୁ ଅଞ୍ଚଳର ଇଚ୍ଛୁକ ସ୍ତ୍ରୀ ପୁରୁଷମାନେ ଅଧିକରୁ ଅଧିକ ରୋଜଗାରକ୍ଷମ ହୋଇ ପାରିଛନ୍ତି । ଆର୍ଥିକ ଉନ୍ନତି, ସାଂସ୍କୃତିକ ଉନ୍ନତିକୁ ବହୁଗୁଣିତ କରିଛି ।

ରାମ ଲୀଳା, ରାମାୟଣ ପାରାୟଣ, ଭାଗବତ ସପ୍ତା, ହରିବଂଶପାଠ ଆଦି ମାଧ୍ୟମରେ ଏବେ ସୁଦ୍ଧା ଆମ ସଂସ୍କୃତିର ବହୁମୂଲ୍ୟ ତଥ୍ୟ ପରିବେଷିତ ହେଉଅଛି । ଲୋକମୁଖରେ ରହିଛି ଭାଗବତ ବାଣୀ । ଏସବୁ ସହରାଞ୍ଚଳକୁ ବି ପ୍ରଭାବିତ କରିଛି । ଆଞ୍ଚଳିକ ନୃତ୍ୟ କଳାର ଆଦର ଆଦି ବହୁତ ବଢ଼ିଯାଇଛି ।

ଆଜି ଉତ୍କଳର ପୁରପଲ୍ଲୀରେ ଗଢ଼ି ଉଠିଥିବା ଯୁବସଂଘ, ଲାଇବ୍ରେରୀ, ମହିଳା ସମିତି, ପଲ୍ଲୀଶ୍ରୋତା ମଣ୍ଡଳୀ, ନାରୀଶ୍ରୋତା ମଣ୍ଡଳୀ, କିଶୋର ଶ୍ରୋତା ମଣ୍ଡଳୀ, ଶିଶୁ ଶ୍ରୋତା ମଣ୍ଡଳୀ ଆଦି ବାସ୍ତବରେ ଆମର ସାଂସ୍କୃତିକ ସଚେତନତାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରନ୍ତି ।

ଦିନଥିଲା ଓଡ଼ିଆ ବହି ହାତରେ ଗଣି ହୋଇଯାଉଥିଲା । ପତ୍ରିକାଟିଏ ନ ଥିଲା ଓଡ଼ିଆ ଭାଷାରେ । ଆଜି ସହରରୁ ଗ୍ରାମାଞ୍ଚଳଯାଏ ଅନେକ ସାଧକଙ୍କର ସାଧନା ଫଳରେ ବିଭିନ୍ନ ପ୍ରକାରର ପତ୍ରପତ୍ରିକା, ପୁସ୍ତକ ଆଦି ଆମ୍ ପ୍ରକାଶ କରିଛି । କେତେ ନୂଆ ଲେଖକ ଲେଖିକା ସୃଷ୍ଟି ହେଲେଣି ।

ଜାତିଭେଦ ଆଜି ଆଉ ଆମ ପଲ୍ଲୀ ଅଞ୍ଚଳରେ ଏକ ଘୋର ସମସ୍ୟା ହୋଇ ନାହିଁ । ପୁଅଝିଅଙ୍କ ମଧ୍ୟରେ ପ୍ରଭେଦ ଅନେକାଂଶରେ କମି ଗଲାଣି । ପରିବାର ନିୟୋଜନକୁ ଅଧିକାଂଶ ପରିବାର ସ୍ୱାଗତ କରୁଛନ୍ତି । ଲୋକେ ଆଉ ଆଗପରି ରକ୍ଷଣଶୀଳ ହୋଇ ନାହାଁନ୍ତି । ଭଲମନ୍ଦର ବିଚାର କରି ପାରୁଛନ୍ତି । ଆଜି ଆମେ ଉନ୍ନତି ପଥରେ ଏତେଦୂର ଆସିଥିଲେ ମଧ୍ୟ ଲକ୍ଷ୍ୟସ୍ଥଳ ତଥାପି ଅନେକ ଦୂରରେ ରହିଛି । ଏବେସୁଦ୍ଧା ସଚେତନତାର ସମୀର ସମସ୍ତଙ୍କୁ ଛୁଇଁ ପାରିନି । ଅନେକ ଅଞ୍ଚଳ ପଛୁଆ ହୋଇ ରହିଯାଉଛି । ସେହିସବୁ ଅଞ୍ଚଳରେ ସଭ୍ୟତାର ଆଲୋକ ପହଞ୍ଚାଇ ଦେବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ସଚେତନତାର ବୀଜ ବୁଣି ସମସ୍ତ ଅଞ୍ଚଳକୁ ପ୍ରଗତି ପଥରେ ଆଗେଇ ନେଇ ପାରିଲେ ଆମର ସାମାଜିକ ଓ ସାଂସ୍କୃତିକ ବିକାଶ ପୂର୍ଣ୍ଣାଙ୍ଗ ରୂପ ନେଇ ପାରିବ ।

ପାଶ୍ଚାତ୍ୟ ସଂସ୍କୃତି ପ୍ରତି ଅତି ଆକର୍ଷଣ ଆମ ପାଇଁ କ୍ଷତିକାରକ । ବେଳେ ବେଳେ ଦେଖାଯାଉଛି, କେହି କେହି ଆମ ନିଜସ୍ୱ ସଂସ୍କୃତିର ମହନୀୟତାକୁ ଭୁଲି, ପାଶ୍ଚାତ୍ୟ ସଂସ୍କୃତିର ଅନାବଶ୍ୟକ ଚମକକୁ ଗ୍ରହଣ କରି ନେଉଛନ୍ତି । ଯାହା ଫଳରେ ଆମର ମୌଳିକତା ନଷ୍ଟ ହେଉଛି । ପାଶ୍ଚାତ୍ୟ ସଂସ୍କୃତିର କୁପ୍ରଭାବ ଆମ ଗାଁ-ଗହଳିରେ ମଧ୍ୟ ପଡ଼ିଛି । ଯୌଥ ପରିବାରର ଆକର୍ଷଣ କମିଛି । ଗୁରୁଜନଙ୍କ ପ୍ରତି ଭକ୍ତି-ଆଦର କମିଛି । ମଣିଷ ବେଶୀ ସ୍ୱାର୍ଥାନ୍ୱେଷୀ ହୋଇପଡ଼ିଛି । ଅର୍ଥ ପ୍ରତି ଆକର୍ଷଣ ଅତ୍ୟଧିକ ବଢ଼ିଛି । ଯାହା ଫଳରେ ଆମ ସଂସ୍କୃତିର ମହନୀୟତା, ମାନବିକତା, ନୈତିକତା ଓ ମହାନୁଭବତା ଆଦିର କ୍ରମ ଅବକ୍ଷୟ ଘଟୁଛି । ଭଲମନ୍ଦ ବିଚାର କରିବାର ସର୍ବୋଚ୍ଚ କ୍ଷମତା ରହିଛି ମନୁଷ୍ୟଠାରେ । ସେହିଶକ୍ତି ବଳରେ ଆମେ ଆମ ସଂସ୍କୃତିର ସର୍ବୋତ୍ତମ ଦିଗଗୁଡ଼ିକର ସୁରକ୍ଷା ପାଇଁ ସଚେତନ ରହିବା ସଙ୍ଗେ ସଙ୍ଗେ ନୂତନକୁ ଗ୍ରହଣ କରିବା ପୂର୍ବରୁ ତାହା ଆମ ପାଇଁ କେତେ ଦୂର ଶୁଭଙ୍କର ହେବ ଚିନ୍ତା କରିବା । ଏତିକି ସଚେତନତା ଆମ ମନରେ ରହିଲେ ଆମର ସାମାଜିକ ଜୀବନ ଶୃଙ୍ଖଳିତ ହେବା ସଙ୍ଗେ ସଙ୍ଗେ ଆମର ସାଂସ୍କୃତିକ ଜୀବନ ବିଭବ ମଣ୍ଡିତ ହୋଇ ପାରିବ ।

ଦରଖାପାଟଣା ପ୍ରା:ବି:,
କଲ୍ୟାଣୀନଗର,
କଟକ - ୧୩

## ଡାନିଡା ସହାୟତାରେ ଓଡ଼ିଶାର ତିନିଗୋଟି ଜିଲ୍ଲାରେ ଯକ୍ଷ୍ମା ନିୟନ୍ତ୍ରଣ କାର୍ଯ୍ୟ

ଗତ ଜାନୁଆରୀ ୨୭ ତାରିଖରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଜଗନ୍ନାଥ ରାଉତଙ୍କୁ ତାଙ୍କ ସଚିବାଳୟସ୍ଥିତ କାର୍ଯ୍ୟାଳୟ ପ୍ରକୋଷ୍ଠରେ ରୟାଲ ଡାନିସ୍ ଏମ୍ବାସୀର ପରାମର୍ଶଦାତା ମି: କାର୍ଷ୍ଟେନ ନିଲାସ ପେଡେରସେନ୍ ଏବଂ ଡାନଲେପର ଅନ୍ୟ ପଦାଧିକାରୀମାନେ ସାକ୍ଷାତ୍ କରିଥିଲେ । ଡାନିଡା ସହାୟତାରେ ଓଡ଼ିଶାରେ ଆରମ୍ଭ କରାଯାଇଥିବା ପରିବର୍ତ୍ତିତ ଜାତୀୟ ଯକ୍ଷ୍ମା ନିୟନ୍ତ୍ରଣ କାର୍ଯ୍ୟକ୍ରମ ସଂପର୍କରେ ସେମାନେ ଆଲୋଚନା କରିଥିଲେ । ଓଡ଼ିଶାର କେନ୍ଦୁଝର, ସୁନ୍ଦରଗଡ଼,ମୟୂରଭଞ୍ଜ ଜିଲ୍ଲାରେ ପ୍ରାଥମିକ ଭାବରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରାଯାଉଛି । ପରବର୍ତ୍ତୀ ପର୍ଯ୍ୟାୟରେ ଝାରସୁଗୁଡ଼ା, ସମ୍ବଲପୁର, ଦେଓଗଡ଼, ନବରଂଗପୁର, ରାୟଗଡ଼ା, କୋରାପୁଟ, ମାଲକାନାଗିରି, ଗଜପତି, ଫୁଲବାଣୀ, ନୂଆପଡ଼ା ଜିଲ୍ଲାମାନଙ୍କୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯିବ । ଉପରୋକ୍ତ ଜିଲ୍ଲାମାନଙ୍କର ଆଦିବାସୀ ଅଞ୍ଚଳରେ ଜାତୀୟ ଯକ୍ଷ୍ମା କାର୍ଯ୍ୟକ୍ରମକୁ ଦୃଢ଼ୀକରଣ, କାର୍ଯ୍ୟକ୍ରମର ପର୍ଯ୍ୟାଲୋଚନା, ଔଷଧ ବିତରଣ ପଦ୍ଧତିର ସମୃଦ୍ଧିକରଣ, ପ୍ରକଳ୍ପ ଅଞ୍ଚଳରେ କାର୍ଯ୍ୟ ସଂପାଦନା ଗବେଷଣା ଏବଂ ପ୍ରତ୍ୟକ୍ଷ ସହାୟତା ପ୍ରଦାନ ଆଦି ଏହି ପ୍ରକଳ୍ପର ମୁଖ୍ୟ ଉଦ୍ଦେଶ୍ୟ ହେବ ବୋଲି ସ୍ଥିର କରାଯାଉଛି । ପ୍ରାୟ ୩୨ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଥିବା ଏହି ପ୍ରକଳ୍ପ ୫ ବର୍ଷ କାର୍ଯ୍ୟ କରିବ ବୋଲି ଜଣାପଡ଼ିଛି ।

# କ୍ରୀଡ଼ା କ୍ଷେତ୍ରରେ ସଂକଳ୍ପର ଅଭାବ

**ମୁଖ୍ୟମନ୍ତ୍ରୀ**

କ୍ରୀଡ଼ା କ୍ଷେତ୍ରରେ ଆମର ଜାତୀୟ ସଂକଳ୍ପର ଅଭାବ ରହୁଛି । ଭାରତବର୍ଷରେ ୧୯୫୨ ମସିହାରେ ମହାରାଷ୍ଟ୍ରର ଜଣେ ଯାଦବ ଗୋଟିଏ ବ୍ରୋଞ୍ଜ ମେଡାଲ ପାଇଥିଲେ । ତା'ର ୪୪ ବର୍ଷ ପରେ ଆଉ ଜଣେ ଭାରତୀୟ ଗୋଟିଏ ବ୍ରୋଞ୍ଜ ମେଡାଲ ପାଇଲେ । ଏ ୪୪ ବର୍ଷ ମଧ୍ୟରେ ଗୋଟିଏ ମେଡାଲ ମଧ୍ୟ କେହି ବ୍ୟକ୍ତିଗତ ଖେଳାଳୀ ଭାରତବର୍ଷକୁ ଆଣିନାହାନ୍ତି । ହକିରେ ମଧ୍ୟ ଆମେ ସେଭଳି ଭାବରେ ଉତ୍କର୍ଷ ପ୍ରଦର୍ଶନ କରିପାରୁନାହୁଁ । ଆମର ସଂକଳ୍ପର ଅଭାବ ରହୁଛି ବୋଲି ମୁଁ ଅନୁଭବ କରୁଛି । ଭାରତୀୟ ହକି ଦଳ ଯଦି ସ୍ପେନ ହକି ଦଳକୁ ପରାସ୍ତ କରିପାରନ୍ତି, ସେମାନେ ଅକ୍ଷମ ହେବାର କୌଣସି କାରଣ ନାହିଁ । କାରଣ ପରାଜୟ ହେଲେ ଆମେ ସେଥିରେ ଭାଙ୍ଗି ପଡୁ । ବିଜୟ ହେଲେ ମଧ୍ୟ ସେ ବିଜୟକୁ ରକ୍ଷା କରିବା ପାଇଁ ଯେଉଁ ଉଦ୍ୟମ ଦରକାର, ଉତ୍ସାହ ଦରକାର, ସଂକଳ୍ପ ଦରକାର, ତାହା ଆମର ରହେ ନାହିଁ । ଏ ହୀନମନ୍ୟତାକୁ ଯଦି ଆମେ ଦୂର କରି ନ ପାରିବା, ତା' ହେଲେ ସ୍ପୋର୍ଟସ କ୍ଷେତ୍ରରେ ଆମର ଉନ୍ନତି ହେବନାହିଁ । ଅବଶ୍ୟ ଖାଲି ମନୋବଳ ରହିଲେ ଯଥେଷ୍ଟ ନୁହେଁ । ମନୋବଳ ସାଙ୍ଗକୁ ଟ୍ରେନିଂ ଦରକାର । ଭାରତଠାରୁ ଆଫ୍ରିକା ଦେଶମାନେ ସାଧାରଣ କ୍ଷେତ୍ରରେ ଅନୁନ୍ନତ ଅବସ୍ଥାରେ ରହିଛନ୍ତି । କିନ୍ତୁ ଇଥିଓପିଆରେ, ଯେଉଁଠି ଦୁର୍ଭିକ୍ଷ ଲାଗି ରହିଛି ସେଠାରେ ସେମାନେ ସ୍ୱର୍ଣ୍ଣପଦକ ପାଇଆସୁଛନ୍ତି । କିନ୍ତୁ ଭାରତବର୍ଷ ଏତେବଡ଼ ବିଶାଳ ଦେଶ, ସେ ଦେଶରେ ଆମେ କୌଣସି କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିପାରୁନାହୁଁ । ଏହାଠୁ ବଳି ଲଜ୍ଜାର କଥା କଣ ଥାଇପାରେ ? ଏ ଗୋଟିଏ ଜାତୀୟ ଲଜ୍ଜା । ଆମେ କି ନିକୃଷ୍ଟ ଅବସ୍ଥାରେ ରହିଛେ । ତେଣୁ ଏ ଦେଶକୁ ଯଦି ଆମେ ଉନ୍ନତ ଅବସ୍ଥାକୁ ଆଣିବାକୁ ଚାହୁଁ, ତା' ହେଲେ ସରକାରଙ୍କର କର୍ତ୍ତବ୍ୟ ଅଛି । ମୁଁ ସରକାରୀ ସ୍ତରର କଥା କହୁଛି । ଭାରତ ସରକାର ସ୍ପୋର୍ଟସ ପ୍ରତି ଯେଉଁଭଳି ଦୃଷ୍ଟି ଦେବାର କଥା ସେଭଳି ଦୃଷ୍ଟି ଏ ପର୍ଯ୍ୟନ୍ତ ଦେଇ ନାହାନ୍ତି । ଚୀନ ଦେଶ କିମ୍ବା ଅନ୍ୟଦେଶ କଥା ଦେଖନ୍ତୁ । ସରକାରୀ ଉଦ୍ୟମ କିଭଳି ଭାବରେ ସ୍ପୋର୍ଟସ ପଛରେ ରହିଛି । ସ୍ପୋର୍ଟସ କଲେଜ, ସ୍ପୋର୍ଟସ ୟୁନିଭରସିଟି ଏବଂ ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ କୋଚ୍ ମାନଙ୍କୁ ରଖି ଟ୍ରେନିଂ ଦିଆଯାଉଛି । ଚୀନ କେଉଁ ଅବସ୍ଥାରେ ଥିଲା, ବର୍ତ୍ତମାନ କେଉଁ ଅବସ୍ଥାକୁ ଆସିଲାଣି । ସରକାରୀ ସ୍ତରରେ ଯେଉଁଭଳି ସ୍ପୋର୍ଟସକୁ ଉତ୍ସାହିତ କରାଯିବାର କଥା, ଆମେ ସେଭଳି ଉତ୍ସାହିତ କରୁନାହୁଁ । ଅବଶ୍ୟ ଗୋଟିଏ ମିନିଷ୍ଟିରିଆଲ ସ୍ପୋର୍ଟସ୍ ଅଛି । ପୂର୍ବରୁ ସେତକ ନ ଥିଲା । ଖାଲି ମିନିଷ୍ଟିରିଆଲ ସ୍ପୋର୍ଟସ୍ ରଖିଦେଲେ ହେବନାହିଁ, ଯେଉଁ ଆନ୍ତରିକତା ଦରକାର, ତାକୁ ମନିଟରିଂ କରିବା ଦରକାର । ମୂଳରୁ ଶେଷ ପର୍ଯ୍ୟନ୍ତ କେଉଁ ସ୍ପୋର୍ଟସକୁ କିଭଳି ଭାବରେ ଉତ୍ସାହିତ କରାଯିବାର କଥା, ତା ଯଦି କରା ନ ଯାଏ, ଖାଲି ଗୋଟିଏ ସ୍ପୋର୍ଟସ୍ ବିଭାଗ ରଖିଦେଲେ କିଛି ଲାଭ ନାହିଁ । ସରକାରୀ ସ୍ତରରେ ମଧ୍ୟ ଜାତୀୟ ସଂକଳ୍ପର ଅଭାବ ରହୁଛି । ଆମେରିକାରେ ଗୋଟିଏ ହିସାବ ବାହାରିଥିଲା, ୫ ଲକ୍ଷ ଗ୍ରାସରୁଟ୍ ଖେଳାଳୀଙ୍କ ଭିତରୁ ଜଣେ ଅଲିମ୍ପିକ ଖେଳାଳୀ ବାହାରେ ଅର୍ଥାତ ଖୁବ୍ କମ୍ ବୟସର ପିଲାଙ୍କୁ ଯଦି ଆମେ ସ୍ପୋର୍ଟସ୍‌ରେ ଶିକ୍ଷା ଦେବା, ଉତ୍ସାହିତ କରିବା, ସେମାନଙ୍କ ଭିତରୁ ଜଣେ ଜଣେ ଅଲିମ୍ପିକ ଖେଳାଳୀ ବାହାରିବେ । ସେ ମେଡାଲ ପାଇବା ନ ପାଇବା ଅଲଗା କଥା । ଅଲିମ୍ପିକ ସ୍ତରର ଖେଳାଳୀ ବାହାରିବା ପାଇଁ ଦରକାର ଉଦ୍ୟମ । ଯେଉଁମାନେ ଆଜି ସନ୍ତରଣରେ ମେଡାଲ ପାଉଛନ୍ତି, କେଉଁ ଅବସ୍ଥାରେ ସେମାନେ ସନ୍ତରଣ ଆରମ୍ଭ କରନ୍ତି ? ୫/୬ ମାସର ପିଲାକୁ ପାଣିକୁ ଛାଡି ଦିଅନ୍ତି । ସନ୍ତରଣ ସେଇଠୁ ତା'ର ଆରମ୍ଭ ହୁଏ । ତା'ପରେ ସେ ବିଶ୍ୱବିଖ୍ୟାତ ସନ୍ତରଣକାରୀ ହୋଇପାରୁଛି । ସନ୍ତରଣରେ ସ୍ୱର୍ଣ୍ଣ ପଦକ ଅର୍ଜନ କରୁଛି । ମୂଳରୁ ଛୋଟ ପିଲାବେଳୁ ଯଦି ଏ ଉଦ୍ୟମ କରା ନ ଯାଏ, ତାହେଲେ ଆମେ କେବେହେଲେ ସ୍ପୋର୍ଟସ୍‌ରେ ଉନ୍ନତି ଲାଭ କରିପାରିବା ନାହିଁ । ଚୀନରେ ଜଣେ ଜଣେ ବ୍ୟକ୍ତିଙ୍କୁ ଦାୟିତ୍ୱ ଦିଆଯାଇଛି ପିଲାମାନଙ୍କୁ ଟ୍ରେନିଂ ଦେବାକୁ । ସେଠି ଜଣେ ରଜ୍ ଓ ଟ୍ରେନରଙ୍କ ନା ହେଉଛି ନା' । ପିଲାଙ୍କୁ ଟ୍ରେନିଂ ଦେବାର ଦାୟିତ୍ୱ ତାଙ୍କର । ଏସିଆଡ଼ ହେଉ କି ଓ୍ୱାର୍ଲଡ ଅଲିମ୍ପିକସ ହେଉ, ସବୁ କ୍ଷେତ୍ରରେ ସେମାନଙ୍କୁ ସେ ଉତ୍ସାହିତ କରୁଛନ୍ତି ଶେଷ ପକ୍ଷରୁ ସେହିପରି ଭାବରେ ଆମେ ଭାରତବର୍ଷରେ କାହିଁକି କରିପାରିବା ନାହିଁ । କ'ଣ ଅସୁବିଧା ହେଉଛି ? ଜାତୀୟ ସେମିନାର ହେବା ଦରକାର ଏ ବିଷୟରେ । ଯେଉଁମାନେ ସବୁ ଏଥିରେ ଏକ୍ସପର୍ଟ

ଅଛନ୍ତି ସେମାନେ ଚିନ୍ତା କରନ୍ତୁ । ଆଲୋଚନା ହେଉ ଭାରତବର୍ଷ ଭିତରେ, କାହିଁକି ଆମର ଅସୁବିଧା ହେଉଛି ? ଆମେ କାହିଁକି ଯୋଜନା କରିବାନି ଯେ ୫ ବର୍ଷ ଭିତରେ ଭାରତବର୍ଷକୁ ପୃଥିବୀରେ ଗୋଟିଏ ପ୍ରଥମ ଶ୍ରେଣୀର ସ୍ପୋର୍ଟସ ରାଷ୍ଟ୍ରରେ ଆମେ ପରିଣତ କରିବା । ସେହି ଦୃଷ୍ଟିରୁ ଓଡିଶାର କଥା ଆମେ ବିଚାର କରିବା ।

ପୃଥିବୀରେ ଭାରତବର୍ଷ ଯାହା, ଭାରତବର୍ଷରେ ଓଡିଶା ସେଇଆ । ପୃଥିବୀରେ ଯେମିତି ଭାରତବର୍ଷର ସ୍ଥାନ ସବୁଠୁ ତଳେ, ଭାରତବର୍ଷରେ ଓଡିଶାର ସ୍ଥାନ ମଧ୍ୟ ସବୁଠୁ ତଳେ । ତେଣୁ ଆମେ କିପରି ଭାବେ ନିଦ୍ରା ଭାଂଗିବା । ଏ ଯେଉଁ ଭିତର ସର୍କଲ ଅଛି, ତାକୁ କିପରି ଭାବରେ ଆମେ ଭାଂଗିବା ଏବଂ ଓଡିଶାକୁ ଉପରକୁ ଉଠେଇବା । ଏ ଦିଗରେ ଗୋଟିଏ ଉଦ୍ୟମ ପ୍ରଥମେ ଆରମ୍ଭ ହୋଇଥିଲା, ଯେତେବେଳେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢା ହୋଇଥିଲା । ସେ ସମୟରେ ଆମେ ପ୍ରଥମ କରି ଗୋଟିଏ ସ୍ପୋର୍ଟସ ନୀତି ପ୍ରଣୟନ କଲେ । ସେ ନୀତି ଆହୁରି ସଂପ୍ରସାରିତ ହେବା ଦରକାର । ଆହୁରି ସେଥିରେ ଖର୍ଚ୍ଚର ବ୍ୟବସ୍ଥା ହେବା ଦରକାର । କିନ୍ତୁ ତା' ପରେ ବନ୍ଦ ହୋଇଗଲା । ପୁଣି ଦଳେଇ ଆସିଲେ ମୂଳକୁ ଗ । ବର୍ତ୍ତମାନ ଆମେ ପୁଣି ଆସିଲୁ । ଆଉଥରେ ପୁଣି ସ୍ପୋର୍ଟସ ନୀତିକୁ ଭଲଭାବେ କାର୍ଯ୍ୟକାରୀ କରିବାକୁ ପଡିବ । ସ୍ପୋର୍ଟସ ନୀତିର ଅର୍ଥ ହେଉଛି ଯେ ପିଲାବେଳୁ ସ୍ପୋର୍ଟସମ୍ୟାନମାନଙ୍କୁ ବାଛିବା ଦରକାର । କିଏ କେଉଁ କ୍ଷେତ୍ରରେ ଭଲ କରୁଛି, କିଏ ହକିରେ ଭଲ କରୁଛି, କିଏ ଫୁଟବଲରେ, କିଏ କ୍ରିକେଟରେ ଭଲ କରୁଛି, କିଏ ୱେଟଲିଫ୍ଟିଂରେ ଭଲ କରୁଛି । କିଏ ରନିଂରେ, ରେସିଂରେ ଭଲ କରୁଛି, ସମସ୍ତଙ୍କୁ ଦେଖି ବାଛିବା ଦରକାର । ଏ ବଛାବଛି କାର୍ଯ୍ୟ ବ୍ଲକ ସ୍ତରରୁ ଆରମ୍ଭ ହେବା ଦରକାର । ବର୍ତ୍ତମାନ ଆରମ୍ଭ ହେଉଛି ପ୍ରଦେଶ ସ୍ତରରୁ । ପ୍ରଦେଶ ସ୍ତରରୁ ଆରମ୍ଭ ନ କରି ବ୍ଲକ ସ୍ତରରୁ ଆରମ୍ଭ କରିବା ଦରକାର ଏବଂ ସେଇଠୁ ଭଲ ଟ୍ୟାଲେଣ୍ଟ ବାଛିକରି ସେମାନଙ୍କୁ ଆମେ ହଷ୍ଟେଲରେ ଶେଷ ପର୍ଯ୍ୟନ୍ତ ରଖିବା ଉଚିତ । ସ୍କୁଲ ସ୍ତରରେ ସ୍ପୋର୍ଟସ ହଷ୍ଟେଲ ହେଉଛି । ସ୍ପୋର୍ଟସ ହଷ୍ଟେଲରେ ଯେଉଁମାନେ ପାସ୍ କରିଯାଉଛନ୍ତି ସ୍କୁଲ ପରେ ସେ କୁଆଡେ ଗଲେ ତା'ର ଖବର ନାହିଁ । ଅଥଚ ତାଂକ ପାଇଁ ଏତେ ଖର୍ଚ୍ଚ କରାଗଲା । ଟ୍ରେନିଂ ଦିଆଗଲା । ତାଂକୁ କଲେଜ ସ୍ତର ପର୍ଯ୍ୟନ୍ତ ଆମେ ଦେଖିବା ଦରକାର ସେ କେଉଁଠି ଅଛନ୍ତି । ଯେଉଁମାନେ ସ୍ପୋର୍ଟସ କ୍ଷେତ୍ରରେ ଆସୁଛନ୍ତି, ସେମାନଙ୍କୁ ରାଷ୍ଟ୍ର ପକ୍ଷରୁ, ରାଜ୍ୟ ପକ୍ଷରୁ ନିଶ୍ଚିତ କରାଯିବା ଦରକାର ଯେ ତୁମର ଅନ୍ୟ ଚିନ୍ତା ରଖିବା ଉଚିତ ନୁହେଁ, ଚାକିରି ଚିନ୍ତା କରିବା ଉଚିତ ନୁହେଁ, ଏ ହେଉଛି ରାଜ୍ୟର ଦାୟିତ୍ୱ, ରାଷ୍ଟ୍ରର ଦାୟିତ୍ୱ । କୌଣସି ନା କୌଣସି ସଂସ୍ଥାରେ ତୁମକୁ ନିଶ୍ଚିତ ରଖାଯିବ । ତୁମେ ସେ ଚିନ୍ତା ରଖନାହିଁ । ପରିବାରଂକୁ ଆମେ କହିଦେବା ଦରକାର ଯେ, ପିଲାପାଇଁ ତୁମେ ଚିନ୍ତା କରିବା ଦରକାର ନାହିଁ । ତା'ର ଦାୟିତ୍ୱ ବର୍ତ୍ତମାନ ସରକାର ଗ୍ରହଣ କଲେ, ରାଜ୍ୟ ଗ୍ରହଣ କଲା । ଯେଉଁମାନେ ସବୁ ଏ କ୍ଷେତ୍ରରେ ବାହାରୁଛନ୍ତି ସେମାନଙ୍କୁ ଆମେ ପୂରା ଉତ୍ସାହିତ କରିବା ଦରକାର । ଓଡିଶାରେ ସବ୍‌ଜୁନିୟରରେ ଗୋଲଡ ମେଡାଲ, ଜୁନିୟରରେ ଗୋଲଡ ମେଡାଲ, ସିନିୟରରେ ମେଡାଲ ନାହିଁ, କାହିଁକି ଏଭଳି ଅବସ୍ଥା ହେଉଛି ? ସବ ଜୁନିୟରରେ ଗୋଲଡ ମେଡାଲ ହେଉଛି, ଜୁନିୟରରେ କମି ଯାଉଛି, ଜୁନିୟର ପରେ ସିନିୟରରେ ନାହିଁ । ତା' ମାନେ ନିରବଚ୍ଛିନ୍ନ ଭାବରେ ଯେପରି ସେମାନଙ୍କୁ ଉତ୍ସାହିତ କରାଯିବାର କଥା, ଟ୍ରେନିଂ ଦିଆଯିବା କଥା, ଆମ ପକ୍ଷରୁ ତାହା ଦିଆଯାଉନାହିଁ । ଗୋଟିଏ ସ୍ତରରେ ତାକୁ ବନ୍ଦ କରିଦିଆଯାଉଛି । ଯେମିତି ଆମର ଲିଟରସି କ୍ୟାଂପେନ୍ କରାଯାଉଛି । ଲିଟରସି କ୍ୟାଂପେନ୍‌ରେ ଯେଉଁମାନେ ପ୍ରାଇମେରୀ ଷ୍ଟାଣ୍ଡାର୍ଡ ପର୍ଯ୍ୟନ୍ତ ଯାଉଛନ୍ତି, ଆମେ ଭାବୁଛୁ ଲିଟରେଟ ହୋଇଗଲେ । ତାଂକୁ ଛାଡିଦେଲା ପରେ ସେମାନେ ଇଲିଟରେଟ୍ ହୋଇଯାଉଛନ୍ତି । ଅର୍ଥାତ ପଢାପଢିର କିଛି ବ୍ୟବସ୍ଥା ନାହିଁ । ସେମାନେ ଯେଉଁ ଅବସ୍ଥାରେ ଥିଲେ ପୁଣି ସେହି ଅବସ୍ଥାରେ ପୁନଃ ମୂଷିକ ଭବଃ । ଯେଉଁମାନେ ସ୍ପୋର୍ଟସରେ ଉପରକୁ ଉଠୁଛନ୍ତି ସେମାନେ ଉପରକୁ ଉପରକୁ ଯିବାର ବନ୍ଦୋବସ୍ତ କରିବା ହେଉଛି ଆମର ଧର୍ମ । ତଳକୁ ଖସିଗଲେ ପୁଣି ଗଲା । ତା ନ ହେଲେ ଓଡିଶା ଠିକ୍ ବୁଢୀଆଣି ଭଳି ଉପରକୁ ଯାଉଥିବ । ଯେମିତି ରର୍ବଟ ବ୍ରୁକ୍ ଷ୍ଟୋରିରେ ଅଛି, ସେମିତି ଆମେ ଖାଲି ଉପରକୁ ଯାଉଥିବା ତଳକୁ ଖସୁଥିବା । ସବ୍ ଜୁନିୟର, ଜୁନିୟର ପର୍ଯ୍ୟନ୍ତ ଯାଇ ତା'ପରେ ତଳକୁ ଖସୁଥିବା । ଏ ଅବସ୍ଥାର ଅବସାନ ଶୀଘ୍ର ଓଡିଶାରେ ସ୍ପୋର୍ଟସରେ ହେବା ଆବଶ୍ୟକ । ୩/୪ ଟି କ୍ଷେତ୍ରକୁ ଆମେ ସବୁଠୁ ବେଶୀ ଗୁରୁତ୍ୱ ଦେବା ଉଚିତ । ତାକୁ ଗୁରୁତ୍ୱ ଦେବା ଅର୍ଥ ସେ ବିଷୟରେ ସମସ୍ତ ସୁଯୋଗ ସୃଷ୍ଟି କରିବା ଉଚିତ । ପ୍ରଥମ କଥା ହେଉଛି ସୁନ୍ଦରଗଡ ଜିଲ୍ଲାରେ ହକି ହେଉଛି ନ୍ୟାସନାଲ ଗେମ୍ । ଗାଁରେ ଯେଉଁ ପିଲାମାନେ ଅଛନ୍ତି ସେମାନଙ୍କର ହକି ଖେଳିବାଟା ଯେପରି ଗୋଟିଏ ସ୍ୱାଭାବିକ ଖେଳ । ଗାଁ ମୁଣ୍ଡ ଛୋଟିଆ ପଡିଆ ହେଉ, ସେମାନେ ଖେଳିବା ଆରମ୍ଭ କରିଦିଅନ୍ତି । ହକି ଯେମିତି ତାଙ୍କର ରକ୍ତଗତ । ତେଣୁ ସେଠି ଆମେ ସମସ୍ତଙ୍କୁ ସୁଯୋଗ ଦେବା ଦରକାର । ରାଉରକେଲାର ପାଖରେ ହକି ଖେଳାଳୀମାନଂକୁ ସମସ୍ତ ପ୍ରକାର ଉତ୍ସାହ ଦେବାର ଉଦ୍ୟମ କରାଯାଉଛି । ସୁନ୍ଦରଗଡର ହକି ଖେଳାଳୀମାନଙ୍କୁ ବେଶୀ ଗୁରୁତ୍ୱ ଦେବା ଉଚିତ । ସ୍କୁଲ ସ୍ତରରୁ ଆରମ୍ଭ କରି ବହୁତ ସ୍କଲାରସିପ୍ ସୁନ୍ଦରଗଡ ଜିଲ୍ଲା ପାଇଁ ରଖିବା ଦରକାର । ହକିରେ ଯେଉଁମାନେ ବର୍ତ୍ତମାନ ସ୍କୁଲରେ ଚଂପିଆନ ହେଉଛନ୍ତି, ସେ ହେଉଛି ବିହାରର

ଗୋଟିଏ ସ୍କୁଲ, କିମ୍ବା ସୁନ୍ଦରଗଡ଼ର ଗୋଟିଏ ସ୍କୁଲ । ଯାଂକରି ଭିତରେ କେବଳ କଂପିଟିସନ୍ । ଯଦି ସେ ବର୍ଷ ସେ ଚଂପିଆନ ହେଲେ, ଏ ବର୍ଷ ଏ ଚଂପିଆନ୍ । ସିଂହଭୂମ, ସୁନ୍ଦରଗଡ଼ ଏହି ଏରିଆ ଭିତରେ ହକି ଖେଳର ଏଭଳି ପ୍ରଚାର ଅଛି । ଆମର କାମ ହେଉଛି ଯେ ଓଡ଼ିଶାରେ ଆମେ ହକି ପାଇଁ ସୁନ୍ଦରଗଡ଼କୁ ସମସ୍ତ ପ୍ରକାର ସାହାଯ୍ୟ ଦେବା ଏବଂ ସେଠି କନ୍‌ସେଣ୍ଟ୍ରେଟ କରିବା । ଏହାର ଅର୍ଥ ନୁହେଁ ଭୁବନେଶ୍ୱରର ଲୋକେ ହକି ନ ଖେଳନ୍ତୁ । କିନ୍ତୁ ଯେଉଁଠି ଟ୍ୟାଲେଣ୍ଟ ଅଛି, ନ୍ୟାଚୁରାଲ ଟ୍ୟାଲେଣ୍ଟ, ସେଠି ତାକୁ ସେ ସୁଯୋଗ ଦିଆଯାଉ ।

ଆଉ ଗୋଟିଏ କ୍ଷେତ୍ରରେ ଆମେ ଅଧିକ ଦୃଷ୍ଟି ଦେବା ଦରକାର । ତା' ହେଉଛି ଆରଚେରୀ । ଆରଚେରୀ ହେଉଛି ଗାଁ ଗଣ୍ଡାରେ ଆଦିବାସୀମାନଙ୍କ ଧନୁ ଧରି ଶର ମାରିବା । ସେମାନେ ଧନୁଶର ସାହାଯ୍ୟରେ ଶିକାର କରନ୍ତି, ନିଜକୁ ରକ୍ଷା କରନ୍ତି । ପୂର୍ବ କାଳରେ ଯୁଦ୍ଧ କରୁଥିଲେ, ଧନୁଶରରେ ଆଦିବାସୀମାନେ ପାରଙ୍ଗମ । ସେମାନଙ୍କୁ କାହିଁକି ସେଥିରେ ଆମେ ଉତ୍ସାହିତ ନ କରିବା । ଆମେ ବ୍ଲକସ୍ତରୀୟ ପ୍ରତିଯୋଗିତା କରି ତା ଭିତରେ ଯିଏ ଭଲ ପିଲା ବାହାରିବେ, ସେମାନଙ୍କୁ ନେଇ ଆର୍ଚେରୀ ଟ୍ରେନିଂ ସ୍କୁଲ କରିବା । ସେଥିରେ ଟ୍ରେନର ଭଲ ଟିଚରମାନଙ୍କୁ ଆଣି ରଖିବା ।

ରନର୍ସ କ୍ଷେତ୍ରରେ ମଧ୍ୟ କେଉଁଝର, ସୁନ୍ଦରଗଡ଼, ମୟୂରଭଞ୍ଜ ଅଂଚଳ ଅଗ୍ରଣୀ । ମୁଁ ଶୁଣିଛି କେଉଁଝର ଜିଲ୍ଲାରେ ହାଟକୁ ଯେଉଁମାନେ ଆସନ୍ତି, ସେମାନେ ୨୦ କି. ମି. ବାଟ ଚାଲିକରି ଆସନ୍ତି । ଦୌଡ଼ିବା ସାଂଗରେ ଏହା ସମାନ । ମାରାଥନ୍ ରେସ୍ କ୍ଷେତ୍ରରେ ଆମେ ସେସବୁ ଲୋକଙ୍କୁ ଉତ୍ସାହିତ କରିବା ଉଚିତ । ସେମାନଙ୍କ ଭିତରୁ ଲୋକଙ୍କୁ ବାଛି ସେମାନଙ୍କୁ ହଷ୍ଟେଲରେ ରଖି ଟ୍ରେନିଂ ଦେବା ଦରକାର । ଦୌଡ଼ିବା କ୍ଷେତ୍ରରେ ମଧ୍ୟ ସେହିଭଳି ଭାବରେ ପ୍ରତିଭା ଅଛି । ସେ ପ୍ରତିଭାକୁ ବିକଶିତ କରିବା ହେଉଛି ରାଷ୍ଟ୍ରର ଧର୍ମ, ରାଜ୍ୟର ଧର୍ମ, ସରକାରଙ୍କ ଧର୍ମ । ସେ ଦିଗରେ ଯାହାକିଛି ଉଦ୍ୟମ ଦରକାର ଆମେ ତାକୁ କରିବା । ଯେଉଁ ଯେଉଁ ଅଂଚଳରେ ଯେଉଁଥି ପାଇଁ ଲୋକଙ୍କର ଆଗ୍ରହ ଅଛି, ତାକୁ ଉତ୍ସାହିତ କରିବା ଦରକାର । ପୁରୀ ଓ କଟକରେ ଯେଉଁସବୁ ପୁରୁଣା ମାଲକୁସ୍ତି ଜାଗା ସବୁ ଥିଲା, ସେଠାରେ ରେସଲିଂ ହେଉଛି । ବରହମପୁରରେ ବକସିଂ ଭଲ । ଭୁବନେଶ୍ୱରରେ ମଧ୍ୟ କିଛି ବକ୍‌ସିଂ ହେଉଛି । ତେଣୁ ଯେଉଁଠି ଯେଉଁ ଅଂଚଳରେ ଯେଉଁଟା ସ୍ୱାଭାବିକ, ସେ ଦିଗରେ ଉତ୍ସାହିତ କରି ସେହିମାନଙ୍କ ଭିତରୁ ପିଲାଙ୍କୁ ବାଛି ଟ୍ରେନିଂ ଦେବା ଦରକାର ।

ଯେଉଁମାନେ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ପ୍ରଦର୍ଶନ କରୁଛନ୍ତି, ସେମାନଙ୍କୁ ଧନ୍ୟବାଦ ଦେଉଛି । ଆମର ପ୍ରଥମ ଅଲଂପିଆନ ଦିଲୀପ ଟେଡକୋ । ମୁଁ ସମସ୍ତଙ୍କ ପକ୍ଷରୁ ତାଙ୍କୁ ଅଭିନନ୍ଦନ ଜଣାଉଛି । ୧୧ ଜଣଙ୍କ ଭିତରେ ସେ ଜଣେ । ରଂଜିବ, ଯିଏ ଆମର ଜୁନିୟର କ୍ରିକେଟ ଟିମର ନେତୃତ୍ୱ ନେଇ ବାହାରେ ଭାରତବର୍ଷର ଖ୍ୟାତି ଅର୍ଜନ କରାଇଛନ୍ତି ତାଙ୍କୁ ମଧ୍ୟ ମୁଁ ଧନ୍ୟବାଦ ଦେଉଛି । ଅନ୍ୟ ଯେଉଁମାନେ ଜାତୀୟ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଛନ୍ତି, ସେମାନେ ସମସ୍ତେ ଆମର ଧନ୍ୟବାଦାର୍ହ । କାରଣ ଓଡ଼ିଶାକୁ କିଛି ନା କିଛି ସେମାନେ ଯଶ ଆଣିଛନ୍ତି । କିନ୍ତୁ ତା' ସଂଗେ ସଂଗେ ମୁଁ କହିବା ପାଇଁ ଚାହେଁ ଯେ ୩/୪ ବର୍ଷ ଧରି ଆମେ ଉଦ୍ୟମ ଅବ୍ୟାହତ ରଖିବା ଦରକାର । ଅସ୍ତ୍ର ପରୀକ୍ଷା ବେଳେ ଦ୍ରୋଣାଚାର୍ଯ୍ୟ ଦୂରବର୍ତ୍ତୀ ପକ୍ଷୀର ଆଖିକୁ ବିନ୍ଧିବା ପାଇଁ କହିଥିଲେ । ପ୍ରଥମେ ଯୁଧିଷ୍ଠିରଙ୍କୁ ପଚାରିଲେ, ତୁମେ କଣ ଦେଖୁଛ । ଯୁଧିଷ୍ଠିର କହିଲେ, ମୁଁ ଗଛ ଦେଖୁଛି, ଆଉ ଗଛ ଭିତରେ ପକ୍ଷୀଟିଏ ବସିଛି । ତା' ପରେ ଦୁର୍ଯ୍ୟୋଧନଙ୍କୁ ଡାକିଲେ । ସେ କହିଲେ, ଗଛ ଦେଖୁଛି । ଗଛରେ ଗୋଟିଏ ଡାଳ ଅଛି । ସେ ଛୋଟିଆ ଡାଳରେ ଗୋଟିଏ ପକ୍ଷୀ ବସିଛି । ଦ୍ରୋଣାଚାର୍ଯ୍ୟ ଏପରି ଜଣ ଜଣ କରି ପଚାରିଲେ । ଶେଷରେ ଅର୍ଜୁନଙ୍କୁ ପଚାରିଲେ, ତୁମେ କ'ଣ ଦେଖୁଛ ? ସେ କହିଲେ, ମୁଁ କିଛି ଦେଖୁନି, ଗୋଟିଏ ପକ୍ଷୀର ଆଖି ଖାଲି ଦେଖୁଛି । ସେହିଭଳି ଭାବରେ ଗୋଟିଏ ଲକ୍ଷ୍ୟ ଆମ ଭିତରେ ସ୍ଥିର କରାଯିବା ଦରକାର । ଧ୍ୟାନ, ଲକ୍ଷ୍ୟ ଓ ଅଭିଳାଷ ସୃଷ୍ଟି କରାଯିବା ଦରକାର, ଯେମିତି ସେହି ଗୋଟିଏ କଥା ସେ ପିଲା ତା'ର ଜୀବନରେ ଦେଖିବ । ମୁଁ ଏଉଆ ହାସଲ କରିବି । ତାକୁ ସେ ନିଶ୍ଚିତ ହାସଲ କରିବ । ହକି ଖେଳରେ ପ୍ରଧାନ ବ୍ୟକ୍ତି ସେତେବେଳେ ଥିଲେ ଧ୍ୟାନଚାନ୍ଦ । ସେ ଖାଲି ଜର୍ମାନ ଖେଳାଳୀମାନଙ୍କୁ ବିଶେଷ ଭାବରେ ଉତ୍ସାହ ଦେଉଥିଲେ । ଭାରତ ସବୁବେଳେ ହକିରେ ସ୍ୱର୍ଣ୍ଣ ପଦକ ଆଣୁଥିଲା । ୧୯୨୮ ମସିହାରୁ ଭାରତ ସ୍ୱର୍ଣ୍ଣ ପଦକ ଆଣୁଥିଲା । ଧ୍ୟାନଚାନ୍ଦ ଲେଖିଛନ୍ତି, ପକେଟରୁ ଗୋଟିଏ ତ୍ରି କଲର ଆଣି ହଲେଇ ଦେଲି । ସେଥିରେ ଆମର ଉତ୍ସାହ ବଢ଼ିଗଲା । ସେମିତି ଓଡ଼ିଶାରେ କିଛି ଦରକାର ନାହିଁ । ଜଗନ୍ନାଥଙ୍କର ଫଟୋ ହଲେଇଦେବା ଦରକାର । ଓଡ଼ିଶାକୁ ଉଠେଇବାକୁ ହେବ, ସେ ସଂକଳ୍ପ ସମସ୍ତଙ୍କ ଭିତରେ ରହିବା ଉଚିତ ।

( ୧୯୯୬ ଅଗଷ୍ଟ ୧୫, ସୂଚନା ଭବନ ଠାରେ କ୍ରୀଡ଼ାବିତମାନଙ୍କ ସମ୍ବର୍ଦ୍ଧନା ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣରୁ )

# କୃଷି ଓ ପରିବେଶ

ଇଂ ଅଭୟ ସୂତାର

କୃଷି ଆମର ମୁଖ୍ୟ ଜୀବିକା । ଦେଶର ଶତକଡା ୯୦ ଭାଗ ଲୋକ ଚାଷ ଉପରେ ନିର୍ଭର କରି ବଞ୍ଚିଥାନ୍ତି । ପୁରାତନ କୃଷି ଠାରୁ ଏବେ ନୂତନ କୃଷିର ବହୁତ ପରିବର୍ତ୍ତନ ଘଟିଛି । ଦେଶର ଲୋକ ସଂଖ୍ୟା ବଢ଼ିବା ସହିତ ଖାଦ୍ୟ ସମସ୍ୟା ବଢ଼ି ଚାଲିଛି । ପ୍ରାକ୍ ସ୍ୱାଧୀନତା ସମୟରେ ଦେଶର ଲୋକସଂଖ୍ୟା ଥିଲା ୩୬ କୋଟି । କିନ୍ତୁ ଖାଦ୍ୟଶସ୍ୟର ଉତ୍ପାଦନ ଥିଲା ମାତ୍ର ୫୦ ନିୟୁତ ଟନ୍ । ବର୍ତ୍ତମାନ ଦେଶର ଲୋକସଂଖ୍ୟା ୯୩ କୋଟି ଏବଂ ଖାଦ୍ୟଶସ୍ୟ ଉତ୍ପାଦନ ୧୯୦ କୋଟି ଟନ୍‌ରେ ପହଞ୍ଚିଛି । ପରିସଂଖ୍ୟାନରୁ ଜଣାଯାଉଛି ଯେ ବିଂଶ ଶତାବ୍ଦୀର ଶେଷ ଭାଗକୁ ଦେଶର ଲୋକସଂଖ୍ୟା ହେବ ୧୦୦ କୋଟି ଏବଂ ଏହି ସଂଖ୍ୟକ ଲୋକଙ୍କ ପାଇଁ ୨୪୦ ନିୟୁତ ଟନ୍ ଖାଦ୍ୟଶସ୍ୟ ଆବଶ୍ୟକ ହେବ । ଏହି ପରିମାଣର ଖାଦ୍ୟଶସ୍ୟ ଉତ୍ପାଦନ ପାଇଁ ଆମକୁ ୨୪ ରୁ ୨୫ ନିୟୁତ ଟନ୍ ରାସାୟନିକ ସାର ଏବଂ ୧.୦ରୁ୨.୦ ଲକ୍ଷ ଟନ୍ ରୋଗ ପୋକ ଏବଂ ଘାସମରା ବିଷାକ୍ତ ଔଷଧ ପ୍ରୟୋଗ କରିବାକୁ ହେବ । ତେଣୁ ପୁରାତନ କୃଷିଠାରୁ ନୂତନ କୃଷି ପ୍ରଣାଳୀ ସଂପୂର୍ଣ୍ଣ ପୃଥକ ।

ଆଧୁନିକ କୃଷିରେ ଉନ୍ନତ ଏବଂ ଅଧିକ ଅମଳକ୍ଷମ ବିହନ ବ୍ୟବହାର କରୁଛେ । ଏହି ସବୁ ଉନ୍ନତ ଏବଂ ଅଧିକ ଅମଳକ୍ଷମ ବିହନ ପାଇଁ ରାସାୟନିକ ସାର ଏବଂ ରୋଗ ପୋକ ନିରୋଧକ ବିଷାକ୍ତ ଔଷଧର ଆବଶ୍ୟକତା ରହିଛି । ତେଣୁ ରାସାୟନିକ ସାର ଏବଂ ରୋଗ ପୋକ ନିରୋଧକ ଔଷଧର ଚାହିଦା ବଢ଼ିଚାଲିଛି ।

ଆମର ବର୍ଦ୍ଧିତ ଲୋକସଂଖ୍ୟାକୁ ଖାଦ୍ୟଶସ୍ୟ ଯୋଗାଇବା ପାଇଁ ଆମେ ଯେଉଁସବୁ ନୂତନ କୃଷି ପ୍ରଣାଳୀ ବ୍ୟବହାର କରୁଛେ, ତାହା ଆମ ପାଇଁ ଯେତିକି ଶୁଭଙ୍କର, ସେତିକି ଭୟଙ୍କର ମଧ୍ୟ ।

ରାସାୟନିକ ସାର ପ୍ରସ୍ତୁତି ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରି ସାର କାରଖାନାମାନ ବସୁଛି । ସାରକାରଖାନାରୁ ନିର୍ଗତ ବହୁ ଦୂଷିତ ପଦାର୍ଥ ନିକଟସ୍ଥ ସ୍ଥଳ, ଜଳ ଏବଂ ବାୟୁମଣ୍ଡଳରେ ମିଶୁଛି । ମାଟିରେ ମିଶି ମାଟିକୁ ପ୍ରଦୂଷଣ କରୁଛି । ନିକଟସ୍ଥ ନଦୀ, ନାଳ, ପୋଖରୀ ଆଦିରେ ମିଶି ଜଳକୁ ଦୂଷିତ କରୁଛି । ବାୟୁମଣ୍ଡଳରେ ବିଷାକ୍ତ ବାଷ୍ପ ନିର୍ଗତ ହୋଇ ବାୟୁମଣ୍ଡଳକୁ ଦୂଷିତ କରୁଛି । ସାର କାରଖାନାର ପ୍ରଦୂଷଣଠାରୁ ବିଷାକ୍ତ ରୋଗ ପୋକ ନିରନ୍ତ୍ରିତ ଔଷଧ କାରଖାନାର ପ୍ରଦୂଷଣ ଭୂମିକା ଆହୁରି ବେଶି । କାରଖାନାରୁ ବାହାରୁଥିବା ବିଷାକ୍ତ ଔଷଧର ଅବଶିଷ୍ଟାଂଶ ସାର ପରି ମାଟି, ଜଳ ଏବଂ ବାୟୁମଣ୍ଡଳକୁ ପ୍ରଦୂଷିତ କରୁଛି । ଅସାବଧାନତାବଶତଃ ଏସବୁ କାରଖାନାରୁ ବିଷାକ୍ତ ଦ୍ରବ୍ୟର ଅପବ୍ୟବହାର ହେଲେ ସମୟେ ସମୟେ ଭୟଙ୍କର ପରିସ୍ଥିତି ସୃଷ୍ଟି ହୁଏ । ବିଗତ ବର୍ଷରେ ଭୋପାଳ ସହରରେ ବିଷାକ୍ତ ଔଷଧ କାରଖାନାରୁ ନିର୍ଗତ ବିଷାକ୍ତ ଫସ୍‌ଫୋମିକ ଗ୍ୟାସ ବାୟୁମଣ୍ଡଳକୁ ଦୂଷିତ କରି ଶହ ଶହ ଲୋକଙ୍କ ଜୀବନହାନି ଘଟାଇଥିଲା ।

ଆଧୁନିକ ଚାଷରେ ବିଭିନ୍ନ ରାସାୟନିକ ସାର ଯଥା : ଯବକ୍ଷାରଜାନ, ଫସଫେଟ, ପଟାସ ଏବଂ କେତେକ ଅଣୁସାର ମଧ୍ୟ ବ୍ୟବହାର ହେଉଛି । ଯବକ୍ଷାରଜାନ ସାରର ଅଧିକ ଅମଳ ପାଇଁ ଯଥେଷ୍ଟ ଅବଦାନ ଅଛି । କିନ୍ତୁ କ୍ଷେତରେ ପ୍ରୟୋଗ ହେଉଥିବା ଏହି ସାର ଶତକଡା ୩୫ ରୁ ୪୦ ଭାଗ ଗଛ ବ୍ୟବହାର କରି ନ ପାରି ମାଟି, ପାଣି ଏବଂ ପରେ ବାୟୁମଣ୍ଡଳକୁ ମଧ୍ୟ ବହିଯାଉଛି । ଯବକ୍ଷାରଜାନ ସାର ମାଟିରେ ପ୍ରୟୋଗ ପରେ ପରେ ମାଟିରେ ବିଭିନ୍ନ ରାସାୟନିକ ପ୍ରକ୍ରିୟା ଘଟେ । ସେଥି ମଧ୍ୟରୁ ନାଇଟ୍ରେଟ ନାମକ ଉପାଦାନ ଅନ୍ୟତମ । ଏହି ନାଇଟ୍ରେଟ ଉପାଦାନକୁ ଫସଲ ଗ୍ରହଣ କରି ନ ପାରିଲେ ଏହା ମାଟିରେ ସ୍ଥିର ନ ରହି ଭୂଗର୍ଭକୁ ବହିଯାଇ ପାଣିରେ ମିଶେ କିମ୍ବା ମାଟି ଉପରେ ବହିଯାଇ ପୋଖରୀ, ନାଳ କିମ୍ବା କୂଅ ପାଣିରେ ମିଶେ । ଏହା ପାଣିରେ ଦ୍ରବୀଭୂତ ହୋଇ ରହେ । ଏହି ନାଇଟ୍ରେଟ ମିଶା ପାଣିକୁ ପିଇଲେ ଆମର ପେଟକୁ ଯାଇ ପେଟ ଗଣ୍ଡଗୋଳ ରୋଗ କରେ ଏବଂ ଅନ୍ତନଳୀ କ୍ୟାନସର ରୋଗ ହୁଏ । ଜାତୀୟ ବିଜ୍ଞାନ ଗବେଷଣା ସଂସ୍ଥାର ବୈଜ୍ଞାନିକମାନେ ପରୀକ୍ଷା କରି କହିଛନ୍ତି ଯେ ପାନୀୟ ଜଳରେ ନାଇଟ୍ରେଟର ପରିମାଣ ଲିଟର ପିଛା ୫୦ ମିଲିଗ୍ରାମ ରହିଲେ ଜଳ ଦୂଷିତ ହୁଏ । ଏବେ ବିଶ୍ୱ କୃଷି ଗବେଷଣା ସଂସ୍ଥା ପାନୀୟ ଜଳରେ ନାଇଟ୍ରେଟର ପରିମାଣକୁ ୫ ଲିଟର ପିଛା ୫୦ ମିଲିଗ୍ରାମରୁ ୧୦୦ ମିଲିଗ୍ରାମରେ ସୀମିତ ରଖିଛନ୍ତି । ଯେଉଁ ରାଜ୍ୟ ବା ଦେଶରେ ଯେତେ ଅଧିକ ପରିମାଣରେ ଯବକ୍ଷାରଜାନ ସାର ବ୍ୟବହାର ହେଉଥିବ, ସେହି ରାଜ୍ୟ ବା ଦେଶରେ ଦୂଷିତ ପାନୀୟ ଜଳର ପରିମାଣ ଅଧିକ । ପଞ୍ଜାବ, ହରିୟାନା ଏବଂ ଗୋଆ ରାଜ୍ୟରେ ହେକ୍ଟର ପ୍ରତି ଯବକ୍ଷାରଜାନ ସାର ପ୍ରୟୋଗ ୧୫୦ କିଲୋରୁ ଅଧିକ ହୋଇଥିବାରୁ ନାଇଟ୍ରେଟଜନିତ ବିଷାକ୍ତ ପାନୀୟ

ଜଳ ଅଧିକ । ଓଡିଶାରେ ଯବକ୍ଷାରଜାନ ଜାତୀୟ ସାର ପ୍ରୟୋଗ ପରିମାଣ ମାତ୍ର ହେକ୍ଟର ପ୍ରତି ୧୫ କିଲୋ । ଏତେ କମ୍ ପରିମାଣର ସାର ରାଜ୍ୟରେ ପ୍ରୟୋଗ ହେଉଥିବାରୁ ପାନୀୟ ଜଳ ଦୂଷିତ ହେବାର ସମ୍ଭାବନା ଯଥେଷ୍ଟ କମ୍ । ନିକଟରେ ପୁରୀ ଜିଲ୍ଲାର କେତେକ କୂଅ ପାଣିକୁ ଦାନିଡା ସଂସ୍ଥା ଦ୍ୱାରା ପରୀକ୍ଷା କରି ଜଣାଯାଇଛି ଯେ ଏହି ସବୁ କୂଅରେ ସର୍ବାଧିକ ୧୩ ମିଲିଗ୍ରାମ ନାଇଟ୍ରେଟ ଅଛି ।

ନାଇଟ୍ରେଟ ଛଡା ଯବକ୍ଷାରଜାନ ସାରର ଏକ ବାଷ୍ପୀୟ ରୂପ ଅଛି ଯେ କି ବାୟୁମଣ୍ଡଳକୁ ଦୂଷିତ କରେ । ନାଇଟ୍ରେଟ ବିକାଶିତ ହେଲେ ନାଇଟ୍ରେଟ ଅକ୍ସାଇଡ ଗ୍ୟାସ ହୋଇ ଆକାଶକୁ ଯାଇ ବାୟୁ ମଣ୍ଡଳକୁ ଉତପ୍ତ କରେ । ଏହା ବ୍ୟତୀତ ଦେଶର ଖାଦ୍ୟ ସମସ୍ୟା ମେଣ୍ଟାଇବା ପାଇଁ ଅଧିକ ଜମିରେ ଧାନ ଚାଷ ହେଉଛି । ଦେଶର ୪୨ ନିୟୁତ ହେକ୍ଟର ଜମିରେ ଏବଂ ଆମ ରାଜ୍ୟରେ ୪୩ ଲକ୍ଷ ହେକ୍ଟର ଜମିରେ ଧାନ ଚାଷ ହେଉଛି । ଜଳସେଚନର ସୁବିଧା ଥିବାରୁ ଖରିଫ୍ ଏବଂ ଡାଲୁଅ ଧାନ ଚାଷ ହେଉଥିବାରୁ ଧାନ କ୍ଷେତରୁ ବହୁ ପରିମାଣର ମିଥେନ ଗ୍ୟାସ୍ ବାହାରି ବାୟୁମଣ୍ଡଳକୁ ଯାଇ ଏହାକୁ ଉତପ୍ତ କରୁଛି । ଏହି ଉତପ୍ତ ଗ୍ୟାସ ସବୁ ବାୟୁ ସ୍ତରର ଓଜନ ସ୍ତରକୁ ଭାଙ୍ଗି ଛିଦ୍ର ସୃଷ୍ଟି କରୁଛି । ଉକ୍ତ ଛିଦ୍ର ଦେଇ ସୂର୍ଯ୍ୟରଶ୍ମିର ଅତି ସୂକ୍ଷ୍ମ ବାଇଗଣି ରଶ୍ମି ଭୂପୃଷ୍ଠକୁ ଆସି ଆମ ଶରୀରରେ ଚର୍ମ କ୍ୟାନସର ରୋଗ ସୃଷ୍ଟି କରିଥାଏ । ଏହାଛଡା ଫସଫେଟ ଜାତୀୟ ସାରରେ କେତେକ ଗୁରୁଧାତୁ ତଥା କ୍ରୋମିୟମ୍, କାଡିମମ୍, ଲିଡ ଫ୍ଲୋରାଇଡ୍ ପ୍ରଭୃତି ଅଛି । ଏହି ସାର ଅଧିକ ପରିମାଣରେ ପ୍ରୟୋଗ କଲେ ଉକ୍ତ ଗୁରୁଧାତୁ ବିଶେଷ କରି ପନିପରିବା ପ୍ରଭୃତି ଫସଲରେ ଅଧିକ ପରିମାଣରେ ଗଚ୍ଛିତ ହୋଇ ରହେ । ଏହାକୁ ଆମେ ଖାଇଲେ ପେଟ ରୋଗରେ ଆକ୍ରାନ୍ତ ହେଉ । ଫସଫେଟ ସାରରେ ଫ୍ଲୋରାଇଡ ନାମକ ଗୁରୁଧାତୁ ଅଧିକ ପରିମାଣରେ ଥାଏ । ଅମ୍ଳ ମାଟିରେ ଉକ୍ତ ସାର ଅଧିକ ପରିମାଣରେ ପ୍ରୟୋଗ ହେଉଥିବାରୁ ମାଟିରୁ ଫ୍ଲୋରାଇଡ ଫସଲ ଦେହକୁ ଯାଇ ଆମ ଶରୀରକୁ ଯାଏ । ଅଧିକ ଫ୍ଲୋରାଇଡ ଦାନ୍ତ ଏବଂ ହାଡ ପାଇଁ ବିଶେଷ କ୍ଷତିକାରକ ।

ସହର ତଳି ଅଞ୍ଚଳର କେତେକ ଚାଷୀ ପନିପରିବାରେ ସହରର ମଇଳା ପାଣିକୁ ପ୍ରୟୋଗ କରନ୍ତି । ଏହି ଆବର୍ଜନା ପାଣିରେ ଶିଷା, ମରକୁରି, ଦସ୍ତା ତୁତୀୟା ପ୍ରଭୃତି ଗୁରୁଧାତୁ ଥାଏ । ଏହି ଗୁରୁଧାତୁକୁ ଫସଲ ଶୀଘ୍ର ଗ୍ରହଣ କରେ । ଏହାକୁ ଆମେ ଖାଇଲେ ବିଭିନ୍ନ ରୋଗରେ ଆକ୍ରାନ୍ତ ହେଉ ।

ଅଧିକ ଅମଳକ୍ଷମ ଫସଲ ଏବଂ ପନିପରିବାରେ ରୋଗ ଏବଂ ପୋକର ସମ୍ଭାବନା ଅଧିକ । ଫସଲକୁ ରୋଗ ଏବଂ ପୋକ ଦାଉରୁ ରକ୍ଷା କରିବା ପାଇଁ ଚାଷୀ ବହୁ ପରିମାଣରେ ପୋକ ଏବଂ ରୋଗ ନିରୋଧକ ଔଷଧ ପ୍ରୟୋଗ କରୁଛି । ବିଶେଷ କରି ପୋକମରା ଔଷଧ ଅଧିକ ବିଷାକ୍ତ । ସମୀକ୍ଷାରୁ ଜଣାଯାଉଛି ଯେ ଧାନ ବିଲରେ ଦାନାଦାର ଔଷଧ ପ୍ରୟୋଗ କଲେ ଧାନ ବିଭିନ୍ନ ପୋକ ଦାଉରୁ ବଞ୍ଚେ ସିନା, ଧାନ କ୍ଷେତରେ ଥିବା ମାଛ ଏବଂ ଅନେକ ଉପକାରୀ ପ୍ରାଣୀ ମୃତ୍ୟୁବରଣ କରନ୍ତି। ଧାନ ବିଲରୁ ଉକ୍ତ ବିଷାକ୍ତ ଦ୍ରବ୍ୟ କୂଅ, ପୋଖରୀ ଏବଂ ନାଳର ପାନୀୟ ଜଳରେ ମିଶେ । ଏହାକୁ ମଣିଷ, ଗୋରୁଗାଈ ଏବଂ ପଶୁପକ୍ଷୀ ପିଇ ବିଷାକ୍ରାନ୍ତ ହୁଅନ୍ତି ।

ଗବେଷଣାରୁ ଜଣାଯାଇଛି ଯେ କେତେକ ବିଷାକ୍ତ ଔଷଧର ବିଷ ଗୁଣ ମାଟିରେ ବହୁଦିନ ଧରି ରହେ । ଏହା ମାଟିରୁ ଧୀରେ ଧୀରେ ବାହାରି ଖାଦ୍ୟ ଏବଂ ଜଳ ସହ ମିଶେ । ପରୀକ୍ଷାରୁ ଜଣାଯାଇଛି ଯେ କେତେକ ପୋକମରା ଔଷଧ ମାଟିରେ ୨ ରୁ ୫ ବର୍ଷ ପର୍ଯ୍ୟନ୍ତ ବାନ୍ଧିହୋଇ ରହେ । ଏହା ଧୀରେ ଧୀରେ ଫସଲ ଦ୍ୱାରା ହେଉ କିମ୍ବା ପିଇବା ପାଣି ଦ୍ୱାରା ହେଉ, ଆମ ଦେହକୁ ଯାଇ ବିଷାକ୍ତ କରେ ।

କୃଷି ଯୋଗୁଁ ଆମର ପରିବେଶ ପ୍ରଦୂଷଣ ହେଉଛି । ଏହା ବୋଲି କ'ଣ ଆମେ କୃଷି କ୍ଷେତରେ ସାର ଏବଂ ରୋଗ ପୋକ ଔଷଧ ପ୍ରୟୋଗ ନ କରି ଅମଳରେ ବାଧା ଦେବା । ଏହା ହେଲେ ଆଗାମୀ ଶତାବ୍ଦୀରେ ଦେଶର ୧୦୦ କୋଟି ଲୋକଙ୍କୁ କେଉଁଠୁ ଖାଦ୍ୟ ଆଣି ଯୋଗାଇବା ? ଦେଶର ଖାଦ୍ୟ ସମସ୍ୟା ସମାଧାନ ପାଇଁ କୃଷିରେ ନୂତନ ବୈଜ୍ଞାନିକ ପ୍ରଣାଳୀ ପ୍ରୟୋଗ ହେବ ଏବଂ ସେହି ବୈଜ୍ଞାନିକ ପ୍ରଣାଳୀରେ ପରିବେଶ ନିର୍ମଳ ହେବ ।

ସାର ପ୍ରୟୋଗରେ ମିତବ୍ୟୟିତା, ସମନ୍ୱିତ ସାର ଏବଂ ରୋଗ ପୋକ ମରା ଔଷଧ ପ୍ରୟୋଗ ପ୍ରଣାଳୀ ପରିବେଶ ପ୍ରଦୂଷଣଜନିତ ସମସ୍ୟାର ସମାଧାନ କରିପାରିବ । ରାସାୟନିକ ସାର ବିଶେଷ କରି ଯବକ୍ଷାରଜାନ ସାରକୁ ଏକାବେଳକେ ପ୍ରୟୋଗ ନ କରି ଭାଗ ଭାଗ କରି ପ୍ରୟୋଗ କଲେ ମାଟି ଏବଂ ପାଣି ପ୍ରଦୂଷଣ ହେବ ନାହିଁ । ରାସାୟନିକ ସାର କମ୍ ପ୍ରୟୋଗ କରି ଉଭୟ ଜୈବ ଏବଂ ରାସାୟନିକ ସାର ମିଶାଇ ପ୍ରୟୋଗ କଲେ ସାରଜନିତ ପରିବେଶ ପ୍ରଦୂଷଣରୁ ରକ୍ଷା ମିଳିବ । ରାସାୟନିକ ଔଷଧକୁ ବେଶି ପରିମାଣରେ ପ୍ରୟୋଗ ନ କରି ଜୈବ ପ୍ରଣାଳୀରେ ରୋଗ ପୋକ ନିୟନ୍ତ୍ରଣ କରିବା ଉଚିତ୍ । ଏପରି କେତେକ ବିଷାକ୍ତ ଔଷଧ ବାଛିବାକୁ ପଡିବ, ଯାହାର ବିଷ ପରିମାଣ କ୍ଷଣସ୍ଥାୟୀ ଏବଂ କମ୍ ବିଷାକ୍ତ ।

ଅଧିକ ଅମଳ ଏବଂ ପରିବେଶ ସୁରକ୍ଷା ପାଇଁ ପ୍ରତ୍ୟେକ ଚାଷୀ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କଲେ ଉଭୟର ସମାଧାନ ସଠିକ ଭାବେ ହୋଇ ପାରିବ ।

ଗ୍ରା:ପୋ: ନରେନ୍ଦ୍ରପୁର
ଭା : ଘଣ୍ଟେଶ୍ୱର, ଜି: ଭଦ୍ରକ

# ଭାରତୀୟ ସଂସ୍କୃତି ଓ ପରଂପରା

**ଶ୍ରୀ ବ୍ରଜ ମୋହନ ସାମନ୍ତରାୟ**

ଭାରତୀୟ ସଂସ୍କୃତି ଅତି ପ୍ରାଚୀନ । ଏହି ମହନୀୟ ସଂସ୍କୃତି, ତାର ବଳିଷ୍ଠ ପରଂପରା ଓ ଐତିହ୍ୟକୁ ସମନ୍ୱିତ କରି ଖ୍ରୀ.ପୂ ୩,୫୦୦ ରୁ ବିଶ୍ୱ ସଂସ୍କୃତିକୁ ଭୂଷିମଂତ କରି ଆସୁଅଛି । ଶ୍ରୀମଦ ଭାଗବତ ଗୀତା ର ସମସ୍ତ ଯୋଗ, ଜୀବନ ଦର୍ଶନ ଏହି ସଂସ୍କୃତିରେ ପ୍ରତିଫଳିତ ।

''ସର୍ବ ଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ,
ଅହମତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ ।''

ସମସ୍ତ ଧର୍ମାବଲମ୍ବୀ ଧର୍ମଗ୍ରନ୍ଥ ବିଭିନ୍ନ ମାର୍ଗରେ ଗତିଶୀଳ ହୋଇ ମଧ୍ୟ ଗୋଟିଏ ଲକ୍ଷ୍ୟବିନ୍ଦୁରେ ପହଞ୍ଚିବା ପାଇଁ ସଦା କର୍ମଶୀଳ । ଏହି ସମନ୍ୱୟତା ବିଶ୍ୱ ସଂହତିର ଏକ ବିଶାଳ ଆଲେଖ୍ୟ ।

ଲିପିବଦ୍ଧ ସଭ୍ୟତାର ଆରମ୍ଭ ଖ୍ରୀ: ପୂ: ୩,୫୦୦ ବର୍ଷ ତଳୁ । ଆର୍ଯ୍ୟ ସଭ୍ୟତାରୁ ଆରମ୍ଭ କରି ବ୍ରାହ୍ମଣ୍ୟ, ଦ୍ରାବିଡ ଓ ରାଜକୁଳ ବଂଶାନୁକ୍ରମେ ସଭ୍ୟତାର ଗତି ଓ ପ୍ରଗତି, ଉତ୍ଥାନ, ପତନ, ପରିବର୍ତ୍ତନ ଘଟିଛି । କିନ୍ତୁ ସଂସ୍କୃତି ଚିରନ୍ତନ । ସଭ୍ୟତା ଓ ସଂସ୍କୃତି ବିଶ୍ୱ ସୃଷ୍ଟିରୁ ସମାନ୍ତର ଭାବେ ଗତିଶୀଳ । ଗୋଟିକର ପରିବର୍ତ୍ତନ ନିଶ୍ଚିତ, ଅବଧାରିତ । ଅନ୍ୟଟିର ପରିବର୍ତ୍ତନ ନାହିଁ, ତାହା ଚିରଂତନ । ସେହି ଆଦି ସଂସ୍କୃତିର ଆଲେଖ୍ୟ ଭାରତୀୟ ସଂସ୍କୃତି । ପ୍ରଭାବିତ କରିଛି ବିଶ୍ୱକୁ ପ୍ରାଚ୍ୟ-ପାଶ୍ଚାତ୍ୟର ସେତୁ ବାନ୍ଧି । ମାନସିକ, ଶାରୀରିକ ସ୍ତରରେ ସଂହତି ସ୍ଥାପନକରି ଜୀବନ ଦର୍ଶନ, ମାର୍ଗ, ଯୋଗ, ଭାବ, ରସ, ଜ୍ଞାନ, ବିଜ୍ଞାନର ସଂଯୋଗ ସ୍ଥାପନ କରି ପାରିଅଛି । ''ଗୁରୁପୂଜା'' ଭାରତୀୟ ସଂସ୍କୃତିର ଏକ ଅବଦାନ । ଏହି ପରିପ୍ରେକ୍ଷୀରେ ଏକଲବ୍ୟ, ଆରୁଣୀର ଚରିତ୍ର ଚିତ୍ରଣ ଅନୁଧ୍ୟେୟ । ''ଭକ୍ତି'' ଗୀତାର ଏକ ମହାନଯୋଗ । ସନ୍ଥକବି ଭୀମଭୋଇ, ଭକ୍ତକବି ସୁରଦାସ, ଦାସିଆ ବାଉରୀ, ବଂଧୁ ମହାନ୍ତି, ସାଲବେଗଙ୍କର ଆଦର୍ଶ ଜାତି, ବର୍ଣ୍ଣ ନିର୍ବିଶେଷରେ ଏକ ସାଂସ୍କୃତିକ ଯୋଗସୂତ୍ର ।

ଭାରତୀୟ ଦାର୍ଶନିକ, ସଂସ୍କାରକମାନଙ୍କର ଚିନ୍ତା ଓ ଚେତନା, ମାର୍ଗ ଦର୍ଶନ ପାଶ୍ଚାତ୍ୟ ଦାର୍ଶନିକ ଓ ସଂସ୍କାରକ ସକ୍ରେଟିସ, ଥୋମାସପେନ, ଭଲଟାଏର, ରୁଷୋ ପ୍ରଭୃତିଙ୍କର ଚିନ୍ତାଧାରାକୁ ପ୍ରଭାବିତ କରିପାରିଛି । ଗୋଟିଏ ଦିଗରେ କବି, ଦିଗଦର୍ଶକ, ଦାର୍ଶନିକ ରବୀନ୍ଦ୍ରନାଥ ଠାକୁର, ଅନ୍ୟ ଦିଗରେ ଜାତି ନିର୍ମାତା ବାପୁଜୀଙ୍କର କର୍ମ, ଧର୍ମ, ଦର୍ଶନ ଭାରତକୁ ଗୁରୁ ସ୍ଥାନରେ ପ୍ରତିଷ୍ଠିତ କରିପାରିଛି । ଭକ୍ତକବି ମଧୁସୂଦନ ପ୍ରସ୍ଫୁଟିତ ପଦ୍ମରେ ଖୋଜି ପାଇଥିଲେ ଜୀବାତ୍ମା ଓ ପରମାତ୍ମାର ଅପୂର୍ବ ମିଳନ । ଏକ ଆଧ୍ୟାତ୍ମିକ ଧ୍ୱନି :

''ସତ୍ୟ ଶିବ ସୁନ୍ଦର ପରମେଶ୍ୱର
ନାମ ସଂଗତେ ଲଗ୍ନ ନାମ ତୋହର
ତୁହିରେ ଅରବିନ୍ଦ ଭକ୍ତ ଜନର
ବିଭୁ ପଦାରବିନ୍ଦ ସୁମନୋହର ''

ଶ୍ରୀଜଗନ୍ନାଥ ସଂସ୍କୃତି ଉତ୍କଳୀୟ ସାଂସ୍କୃତିକ ପରଂପରା ଓ ଧର୍ମ ମାର୍ଗକୁ କେବଳ ପ୍ରସାରିତ କରିନାହିଁ, ''ବସୁଧୈବ କୁଟୁମ୍ବକମ୍'' ମନୋଭାବ, ସାର୍ବଜନୀନ ଭ୍ରାତୃତ୍ୱ, କରୁଣା, ମୈତ୍ରୀଭାବ ସଂସ୍ଥାପନ କରି ଆସିଅଛି । ଆଦିବାସୀ ପୂଜିତ, ରୂପରେ ଖଣ୍ଡିତ ଦେହଧାରୀ ବିନାଶ କଳ୍ପିତ ଏହି ଦେବ ବିଗ୍ରହର ଏହା ଏକ ଅପୂର୍ବ ମହିମା । ସେଥିପାଇଁ ସାଧାରଣ ଲୋକ ଶ୍ରୀଜଗନ୍ନାଥଙ୍କୁ ନିଜ ପରିବାରଠାରୁ ପୃଥକ ବୋଲି ଚିନ୍ତା କରେ ନାହିଁ । ''ଶ୍ରୀମନ୍ଦିର'' ମାନବ ଜୀବନର ଶୁଦ୍ଧ ପ୍ରକ୍ରିୟା, ଏକ ନିଖୁଣ ପ୍ରତିଛବି ।

ଭାରତୀୟ ସଂସ୍କୃତି ତଥା ଜଗନ୍ନାଥ ସଂସ୍କୃତିର ପ୍ରାଣକେନ୍ଦ୍ର ''ଉତ୍କଳ'' କହିଲେ ଅତ୍ୟୁକ୍ତି ହେବନାହିଁ । ସଂପଦରେ ପ୍ରାଚୁର୍ଯ୍ୟଭରା ''ଉତ୍କଳ'' ବିଶ୍ୱ ଦରବାରରେ ବନ୍ଦିତ । କଥାରେ ଅଛି, ''ବାରମାସରେ ତେର ଯାତ'' କିନ୍ତୁ ଅସଲରେ ଏହାଠାରୁ ଅଧିକ ଏହାର ଦୈନନ୍ଦିନ ଜୀବନ ନିର୍ବାହ, ପୂଜା ଅର୍ଚ୍ଚନା, ପର୍ବପର୍ବାଣୀ ।

ବଳଭଦ୍ର, ସୁଭଦ୍ରା, ଶ୍ରୀଜଗନ୍ନାଥ ଏହି ତିନି ଠାକୁରଙ୍କର ମନ୍ଦିର ଭିତର ବିଧିବିଧାନ, ଗଜପତି ମହାରାଜା ତଥା ଠାକୁର

ରାଜାଙ୍କର ଛେରା ପହଂରା କୋଟି କୋଟି ଦର୍ଶକଙ୍କର ନୟନ ଯୁଗଳରେ ବହୁ ଆଶା ଆକାଂକ୍ଷା ଓ ଆନନ୍ଦାଶ୍ରୁର ସ୍ଫୁଲିଙ୍ଗ ଏକ ଅବିସ୍ମରଣୀୟ ଦୃଶ୍ୟ ।

ବଡଦାଣ୍ଡ କୋଟି କଣ୍ଠରେ ଜୟ ଜଗନ୍ନାଥ, ଜୟ ବଳଭଦ୍ର, ଜୟ ମାତା ଅମ୍ବିକା, ସୁଭଦ୍ରା ଧ୍ୱନିରେ ନିନାଦିତ । କି ଅପୂର୍ବ ଦେବଲୀଳା । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମବେତ ଆବାଳ ବୃଦ୍ଧ ବନିତା ''କାଳିଆ''ର ନାମ ସ୍ମରଣକରି ରଥ ଦଉଡି ଟାଣୁଥାନ୍ତି । କ୍ଲାନ୍ତି ନାହିଁ, ଅବସାଦ ନାହିଁ । ଥାଏ କେବଳ ମାନସିକ ପ୍ରଶାନ୍ତି । ଆତ୍ମ ସନ୍ତୋଷ, ଆତ୍ମ ବିଶ୍ୱାସ । ରଥରଜ୍ଜୁ ଛୁଇଁଲେ ଅହମିକା, ଦର୍ପ, ଦମ୍ଭ, ଅସୂୟା ବିଲୁପ୍ତ ହୁଏ । ''ରଥରଜ୍ଜୁ'' ମୋକ୍ଷ ବା ମୁକ୍ତିର ନିଶାଣ ।

କି ଅଦ୍ଭୁତ ଲୀଳା ପ୍ରକଟିତ ଭାରତୀୟ ସଂସ୍କୃତି ତଥା ଶ୍ରୀଜଗନ୍ନାଥ ସଂସ୍କୃତିରେ । ବିଭିନ୍ନ ପର୍ବପର୍ବାଣୀ, ପଣା ସଂକ୍ରାନ୍ତି, ରଜ ସଂକ୍ରାନ୍ତି, ରଥଯାତ୍ରା, ଗହ୍ମାପୂର୍ଣ୍ଣମୀ, କାର୍ତ୍ତିକ ପୂର୍ଣ୍ଣମୀ, ଦୀପାବଳୀ, ଜନ୍ମାଷ୍ଟମୀ, ନନ୍ଦୋତ୍ସବ, ଖୁଦୁରୁକୁଣୀ, ନୂଆଖାଇ, ଦଶହରା, କୁମାର ପୂର୍ଣ୍ଣିମୀ, ଲକ୍ଷ୍ମୀପୂଜା, କାଳୀପୂଜା, ମାର୍ଗଶୀର ଗୁରୁବାର, ଅନେକ ଯାନିଯାତ୍ରା ଏହି ସଂସ୍କୃତି ସହିତ ଜଡିତ । ପାଶ୍ଚାତ୍ୟ ଦେଶର ତଥା ଖ୍ରୀଷ୍ଟିୟାନ ଭାଇ, ଭଉଣୀମାନଙ୍କର ପର୍ବପର୍ବାଣୀ - ଗୁଡ ଫ୍ରାଇଡେ, ବଡଦିନ, ନୂଆବର୍ଷ ପାଳନ, ମୁସଲମାନ ଧର୍ମାବଲମ୍ବୀ ଭାଇ ଭଉଣୀମାନଙ୍କର ରୋଜା, ମହରମ୍, ଇଦପର୍ବ, ଆଦିବାସୀମାନଙ୍କର ବହୁ ପର୍ବ ପର୍ବାଣୀରେ ଭେଦଭାବ, ଅହଂକାର, ଗର୍ବ, ଅସୂୟାଭାବ ନାହିଁ । ଅଛି ସାର୍ବଜନୀନ ଭାତୃତ୍ୱ ଓ ମୈତ୍ରୀ ।

ଲଳିତକଳା, ଚାରୁକଳା, ସଂଗୀତ, ନୃତ୍ୟାଭିନୟ, ଶିଳ୍ପକଳା, ଭାସ୍କର୍ଯ୍ୟ, ସ୍ଥାପତ୍ୟରେ ଶ୍ରୀଜଗନ୍ନାଥ ସଂସ୍କୃତି ସମୃଦ୍ଧ ।

'ଦାରୁ କଥା କହେ । କଥା କହେ ମୃତ୍ତିକା ଓ ପାଷାଣ । ସଂସ୍କୃତିର ଏହା ଏକ ବିଭବଶାଳୀ ରୂପାୟନ । ନଦୀଗାତ୍ର ତାର ହୃଦୟର କଥା ବାହୁନି ବସେ । ଖ୍ରୀ: ପୂ: ୨୬୧ ଅଶୋକଙ୍କର କଳିଙ୍ଗ ଅଭିଯାନ ଏପର୍ଯ୍ୟନ୍ତ ସ୍ମୃତିରୁ ଲିଭିନାହିଁ । ଜାତି ଇତିହାସର ସେହି ପୃଷ୍ଠା ମୂର୍ତ୍ତିମନ୍ତ ଓ ଜାଗ୍ରତ । ''ଦୟାନଦୀ'' ରକ୍ତ ନଦୀରେ ପରିଣତ ହେଲା । ଏପର୍ଯ୍ୟନ୍ତ ଇତିହାସ ତା'ର ଆଖ୍ୟାୟିକା ବଂଚାଇ ରଖିଅଛି । ରକ୍ତନଦୀ ''ଚଣ୍ଡାଶୋକ''କୁ ''ଧର୍ମାଶୋକ''ରେ ପରିଣତ କଲା ଓ ବୌଦ୍ଧଧର୍ମ ପ୍ରଚାରିତ ହେଲା । କି ଅଦ୍ଭୁତ ସମ୍ମୋହନ ଶକ୍ତି ଉତ୍କଳ ସଂସ୍କୃତିର ।

ଉତ୍କଳର ନଦନଦୀ, ବନ ପାହାଡ, ଗିରିବନ ସବୁ ଆଖ୍ୟାୟିକା ସଜାଡି ରଖିଛି । ଫିରିଙ୍ଗି ଶାସନର ଇତିହାସ ଓଡିଆ ପାଇକର ବୀରତ୍ୱକୁ ସଜୀବ ରଖିଛି ଓଡିଶାର ''ପାଇକ ବିଦ୍ରୋହ'' । ଉତ୍‌ଥାନ ପତନର ମୂକସାକ୍ଷୀ ରୂପେ ବିଦ୍ୟମାନ ମହାନଦୀ, କାଠଯୋଡି, ସୁବର୍ଣ୍ଣ ରେଖା, ବୈତରଣୀ, ବାରବାଟୀ ଗଡଖାଇ, ରାଇବଣିଆ, ଶିଶୁପାଳଗଡ, ରକ୍ତତୀର୍ଥ ଇରମ ଓ ଗଡଖୋରଧା ଇତ୍ୟାଦି ।

ଶ୍ରୀମନ୍ଦିର, କୋଣାର୍କ, ଚନ୍ଦ୍ରଭାଗା, ଉଦୟଗିରି, ଖଣ୍ଡଗିରି, ଲଳିତଗିରି, ତୋଷାଳି, ଧଉଳିର ପ୍ରସ୍ତର ବୁକୁରେ ପ୍ରତିଫଳିତ ଓଡିଆ ଜାତିର କଳାପାଟବତା, ନିହାଣ ମୁନର ନିପୁଣତା, ଗିରିବନ, ପାହାଡ କନ୍ଦର, ଦରିଆ ଏପାରି ସେପାରି ସବୁଜିମା, ଅଂଶୁପା, ନୀଳାମ୍ବୁ ଚିଲିକା, ଚିରସ୍ରୋତା ଇତିହାସ ପ୍ରସିଦ୍ଧି ଦୟା ଭାର୍ଗବୀ, ଗଂଗା ଗୋଦାବରୀ, କାବେରୀ, ଯାଦୁଘର ସଂଗ୍ରହାଳୟ, ଗ୍ରନ୍ଥାଗାର, ମାଦଳାପାଞ୍ଜି ଭାରତୀୟ ସଂସ୍କୃତିର ମହନୀୟତା ପ୍ରକାଶ କରି ଆସୁଅଛି ।

ସାଧବ ପୁଅମାନେ ସାତ ସମୁଦ୍ର, ତେର ନଈ ପାର ହୋଇ ବୋଇତରେ ବାଣିଜ୍ୟ ଉଦ୍ଦେଶ୍ୟରେ ସୁଦୂର ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଇତ୍ୟାଦି ଦ୍ୱୀପକୁ ଯାଉଥିଲେ । ସାଂସ୍କୃତିକ ସଂହତି ସ୍ଥାପନକରି ନିଜ ଦେଶକୁ ଫେରାଇ ଆଣୁଥିଲେ ଅନେକ ଅପ୍ରାପ୍ୟ ଦୁର୍ମୂଲ୍ୟ ଦ୍ରବ୍ୟ । ବୈଦେଶିକ ପରିବ୍ରାଜକ ମେଘାସ୍ଥିନିସ୍ ଫାହିୟାନ ଓ ହୁଏନ୍‌ସାଂଙ୍କ ବିବରଣୀରେ ଓଡିଶାର ପାରଂପରିକ ନୌବାଣିଜ୍ୟର ନିଖୁଣ ଚିତ୍ର ଚିତ୍ରିତ ।

ଭାରତୀୟ ସଂସ୍କୃତି ଅହିଂସା, ସହନଶୀଳତା, କ୍ଷମା, ସଂପ୍ରୀତି ଓ ସଂହତିର ଏକ ନିଖୁଣ ଅଭିବ୍ୟକ୍ତି । ଭାରତ ବିଶ୍ୱର କ୍ରୀଡାସ୍ଥଳୀ, ଲୀଳାସ୍ଥଳୀ । ଭାରତ ଦୁଇଟି ଶବ୍ଦରେ ସଂଯୁକ୍ତ । ଯଥା ଭା + ରତ । 'ଭା' ର ଅର୍ଥ ଭଗବାନ, 'ରତ' ଅର୍ଥ ସଂଯୁକ୍ତ ସମ୍ମିଳିତ ସମର୍ପିତ ବିଭୁ ପଦାରବିନ୍ଦରେ । ଯାଗଭୂମି, ତ୍ୟାଗ, ତିତିକ୍ଷାର ଭୂମି, ସନ୍ୟାସ-ଭୂମି, ଶୂର, ସୂରୀ, ଆଚାର୍ଯ୍ୟ ସନ୍ଥଭୂମି ''ଭାରତ'' ତା'ର ନାମ ସାର୍ଥକ କରିଛି । ପ୍ରାଚ୍ୟ ପାଶ୍ଚାତ୍ୟର ଗୁରୁପଦ ଲାଭ କରି, ହସ୍ତରେ ସଂସ୍କୃତିର ଦୀପଶିଖାଧରି, ମୁନି ଋଷି ସନ୍ୟାସୀମାନଙ୍କର ଜୀବନାଦର୍ଶ ସାରା ବିଶ୍ୱକୁ ପ୍ରଭାବିତ କରୁଅଛି ।

ଜାତିର ନିର୍ମାତା ବାପୁଜୀ, ଯୁଗଜ୍ୟୋତି ଜବାହର, ଶାନ୍ତି ଓ ସରଳତାର ପ୍ରତୀକ ଶାସ୍ତ୍ରୀଜୀ, ବିପ୍ଳବୀ ସୁଭାଷ ପ୍ରଭୃତିଙ୍କର ଦେଶପ୍ରେମ, ତ୍ୟାଗ, ସେବା ଗର୍ବ ଓ ଗୌରବ । ବୁଦ୍ଧଦେବ, ମହାବୀରଙ୍କର ଅହିଂସା ଧର୍ମ, କୌଟିଲ୍ୟଙ୍କର ତାତ୍ତ୍ୱିକ ଅନୁଚିନ୍ତନ, ଚୈତନ୍ୟଙ୍କର ପ୍ରେମ ଧର୍ମପ୍ରଚାର, ରାମାନୁଜ, କବୀରଙ୍କର ସଂସ୍କାରମୂଳକ ଉପଦେଶାବଳୀ, ରାମକୃଷ୍ଣ ପରମହଂସ, ସ୍ୱାମୀ

ବିବେକାନନ୍ଦଙ୍କର ସାଧନା, ଓଡ଼ିଆ ଜାତିର ମଉଡ଼ମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନଙ୍କ ତ୍ୟାଗ ତପସ୍ୟା ଭାରତୀୟ ସଂସ୍କୃତିକୁ ଉଜ୍ଜୀବିତ ଓ ମହିମାନ୍ୱିତ କରିଛି । ବୀରତ୍ୱ, ତ୍ୟାଗ ଓ ସ୍ୱାଭିମାନର ମୂର୍ତ୍ତିମଂତ ପ୍ରତୀକ ବୀରବର୍ଷର ବାଜିରାଉତ ଓ କୋଣାର୍କ ଇତିହାସର ମଉଡ଼ମଣି ଧରମା ଉତ୍କଳମାତାର ଅମର ସନ୍ତାନ ।

ଗାଁ ଦାଣ୍ଡରେ, ବିଲମାଳରେ, ଲୋକ କଣ୍ଠରେ ଚାଷୀ କଣ୍ଠରେ, 'ମନବୋଧ ଚଉତିଶା' । ଏଥିରେ ଅଛି ଅପୂର୍ବ ମାଦକତା, ସାଂସ୍କୃତିକ ସରସତା । ଚାଷୀ ବାପୁଡ଼ା ହଳ ଲଙ୍ଗଳ ଧରି ଟାଣ ଟାଣ ଖରାରେ, କେତେବେଳେ ବର୍ଷାରେ ଭୂମି କର୍ଷଣ କରୁଥାଏ । ତା'ର କଣ୍ଠରେ :-

''ଜହର ମନ ଆରେ ମୋ ବୋଲ କର
କଳା ଶ୍ରୀମୁଖ ବାରେ ଦେଖିବା ଚାଲରେ
କେତେ ଦିନକୁ ମନ ବାନ୍ଧୁଛୁ ଆଣ୍ଡ
କି ଘେନି ଯିବୁ ତୁହି ଛୁଟିଲେ ଘଟ ''

ଏହି ସଂଗୀତର ମୂର୍ଚ୍ଛନାରେ କି ଆତ୍ମୀୟତା, ଭାବ ରସାଳତା ଓ ଆଧ୍ୟାତ୍ମିକତା । କ୍ଲାନ୍ତି ନାହିଁ । ଅବସାଦ ନାହିଁ । ବିଷାଦ ନାହିଁ । ଅଛି ଉଦ୍ଦୀପନା, ସକ୍ରିୟତା ଓ ପ୍ରଫୁଲ୍ଲତା ।

ଏ.ଏମ୍ - ୩୮ - ଭୀମଟାଙ୍ଗୀ
ଭୁବନେଶ୍ୱର - ୨
୭୫୧୦୦୨

## ଓଡ଼ିଶାର ବନ୍ଦର ବିକାଶ କାର୍ଯ୍ୟକ୍ରମରେ ଥାଇଲାଣ୍ଡ କଂପାନୀର ଆଗ୍ରହ

ରାଜ୍ୟରେ ବୃହତ୍ ବନ୍ଦରର ବିକାଶ ସଂପର୍କରେ ଅନୁସଂଧାନ କରିବାପାଇଁ ମିଃ ପୋଲ୍ ପୋଲ୍ସେନ ଗତ ଜାନୁଆରୀ ତା ୭ ରିଖରୁ ତା ୧୦ ରିଖ ପର୍ଯ୍ୟନ୍ତ ଓଡ଼ିଶା ଗସ୍ତରେ ଆସିଥିଲେ । ଅକ୍ଟୋବର ମାସରେ ମୁଖ୍ୟମନ୍ତ୍ରୀଙ୍କ ଥାଇଲାଣ୍ଡ ଗସ୍ତ ପରେ ମିଃ ପୋଲସେନ୍‌ଙ୍କ ଓଡ଼ିଶା ଗସ୍ତ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ମୁଖ୍ୟମନ୍ତ୍ରୀଙ୍କ ଥାଇଲାଣ୍ଡ ଗସ୍ତ ସମୟରେ ଥାଇଲାଣ୍ଡର ସର୍ବବୃହତ ଜାହାଜ କଂପାନୀ ଜି. ପ୍ରେମଜୀ ଗ୍ରୁପର ମିଃ କିରାତି ସାହାଙ୍କ ସହିତ ଆଲୋଚନା ହୋଇଥିଲା । ସେ ସମୟରେ ପ୍ରେମଜ ଗ୍ରୁପ୍ ଓଡ଼ିଶାର ବନ୍ଦର ବିକାଶ ବିଷୟ ନେଇ ଆଗ୍ରହ ଦେଖାଇଥିଲେ । ମିଃ ପୋଲସନ୍ ଷ୍ଟେଭେଡୋରିଂ ସର୍ଭିସେସ୍ (ଏସ୍.ଏସ୍.ଏ)ର ଉପସଭାପତି ଅଛନ୍ତି । ଏହି କଂପାନୀ ପଣ୍ୟଦ୍ରବ୍ୟ ସେବା କ୍ଷେତ୍ରରେ ସାରା ପୃଥିବୀରେ ସୁନାମ ଅର୍ଜନ କରିଛନ୍ତି । ସେମାନେ ଇଣ୍ଟରନେସନାଲ୍ ସି ପୋର୍ଟସ ପ୍ରିସିଅସ୍ ସିପିଙ୍ଗ ଏବଂ ଲାରସନ୍ ଓ ଟୁବ୍ରୋ କଂପାନୀ ସହ ମିଶି ବୃହତ ବନ୍ଦ ବିକାଶ କରିବା ପାଇଁ ଏକ ମିଳିତ କଂପାନୀ ଗଠନ କରିଛନ୍ତି ।

ଜାନୁଆ ୀ ତା ୭ ଓ ୮ ରିଖ ଦିନ ମିଃ ପୋଲ୍ସେନ୍ ଏଲ୍ ଆଣ୍ଡ ଟି ର ଶ୍ରୀ ରଂଗରାଜନଙ୍କ ସହ ପ୍ରସ୍ତାବିତ ଧାମରା ବନ୍ଦର ଏବଂ ଗୋପାଳପୁର ବନ୍ଦର ପରିଦର୍ଶନ କରିଥିଲେ । ଧାମରାକୁ ଏକ 'ସବୁଜ-ପ୍ରାନ୍ତର' ବନ୍ଦର ରୂପେ ଗଢ଼ି ତୋଳିବା ଦିଗରେ ସେମାନେ ପ୍ରବଳ ଆଗ୍ରହ ପ୍ରଦର୍ଶନ କରିଛନ୍ତି । ପରେ ସେମାନେ ଅତିରିକ୍ତ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ଅନ ନ୍ୟ ବରିଷ୍ଠ ସରକାରୀ କର୍ମକର୍ତ୍ତାଙ୍କ ସହ ଆଲୋଚନା କରିଥିଲେ

ମୁଖ୍ୟ ନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ସହ ଆଲୋଚନା ସମୟରେ ସେମାନେ ଗୋପାଳପୁର ବନ୍ଦରର ବିକାଶ ଓ ଧାମରାଠାରେ ବନ୍ଦର ନିର୍ମାଣ ସଂପର୍କରେ ଆଲୋଚନା କରିଥିଲେ । ଇଣ୍ଟ ନେସନାଲ୍ ସି ପୋର୍ଟସ ଲିମିଟେଡ (ଆଇ.ଏସ୍.ପି ) ରାଜ୍ୟ ସରକାରଙ୍କ ସହାୟତାରେ ଧାମରା ବନ୍ଦର ନିର୍ମାଣ କାର୍ଯ୍ୟ ହାତକୁ ନେବାକୁ ଆଗ୍ରହୀ ଅଛନ୍ତି । ରାଜ୍ୟ ସରକାର ଏଥିପାଇଁ ଆନ୍ତର୍ଜାତିକ ସ୍ତରରେ ପ୍ରତିଯୋଗିତା ପାଇଁ ଟେଣ୍ଡର ଆହ୍ୱାନ କରିବେ । ଆଇ.ଏସ୍.ପି. ଏହି ପ୍ରକ୍ରି ାରେ ସାମି ହେବା ଉଚିତ ବୋଲି ସରକାରଙ୍କ ପକ୍ଷରୁ ଜଣାଇ ଦିଆଯାଇଥିଲା । ସେମାନଙ୍କ ଦ୍ୱାରା ଏହି କାର୍ଯ୍ୟ ହାତ ନିଆଗଲେ ରାଜ୍ୟ ସରକାରଙ୍କ ପକ୍ଷରୁ ସମସ୍ତ ପ୍ରକାର ଭିତ୍ତିଭୂମି ଯୋ ା ଇ ଦିଆଯିବ । ଏଲ ଆଣ୍ଡ ଟି କଂପାନୀ ମଧ୍ୟ ବି.ଓ.ଟି. ପ୍ରକଳ୍ପରେ ଆଗ୍ରହ ପ୍ରଦର୍ଶନ କରିବା ସଂଗେ ସଂଗେ ବାଲୁଗାଁ ବାଇପାସ୍ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ଆଗ୍ରହ ଦେଖାଇଥିଲେ ।

# ଉତ୍କଳ ଭାରତୀ କୁନ୍ତଳାକୁମାରୀ

**ଶ୍ରୀ ଗତିକୃଷ୍ଣ ଦାସ**

ଉତ୍କଳର ବାଣୀଭଣ୍ଡାର ବିଂଶ ଶତାବ୍ଦୀର ପ୍ରାକ୍ କାଳରେ ଯେଉଁ କେତେକ ପ୍ରତିଭାଦୀପ୍ତ ସାହିତ୍ୟିକଙ୍କ ରଚନାରେ ସମୃଦ୍ଧ, ତନ୍ମଧ୍ୟରେ ଉତ୍କଳଭାରତୀ କୁନ୍ତଳା କୁମାରୀ ଅନ୍ୟତମ । ମାତ୍ର ୩୮ ବର୍ଷ ଜୀବନକାଳ ମଧ୍ୟରେ କୁସଂସ୍କାରଗ୍ରସ୍ତ, ରକ୍ଷଣଶୀଳ ଉତ୍କଳୀୟ ସମାଜରେ ଏହି ଅସୀମ ସାହସିନୀ, ବିପ୍ଳବର ଜ୍ୱଳନ୍ତ ବହ୍ନିଶିଖା, ତେଜସ୍ୱିନୀ କବି ତଥା ଔପନ୍ୟାସିକା କୁନ୍ତଳା କୁମାରୀ ସମାଜ ସଂସ୍କାରାଭିମୁଖୀ ବୈପ୍ଳବିକ ଚିନ୍ତାଧାରାରେ ସମୃଦ୍ଧ ଯେଉଁଭଳି ଉଚ୍ଚକୋଟୀର ପଦ୍ୟ ଓ ଗଦ୍ୟ ସାହିତ୍ୟ ରଚନା କରିଯାଇଛନ୍ତି ତାହା ବାସ୍ତବରେ ତାଙ୍କର ଗଭୀର ଦେଶପ୍ରୀତି ଓ ଅପୂର୍ବ ସୃଜନଶକ୍ତିର ପରିଚୟ ବହନ କରେ । କାବ୍ୟ-କବିତା ବ୍ୟତୀତ ଗଦ୍ୟ-ସାହିତ୍ୟ, ବିଶେଷତଃ ଉପନ୍ୟାସ-ସାହିତ୍ୟରେ ସ୍ୱୀୟ କୃତିତ୍ୱର ପରିଚୟ ସେ ଦେଇଛନ୍ତି । ସାହିତ୍ୟର ପ୍ରତ୍ୟେକ ବିଭାଗକୁ ଯଶସ୍ୱିନୀ କୁନ୍ତଳା କୁମାରୀଙ୍କ ଲେଖନୀ ସ୍ପର୍ଶ କରିଛି । ସର୍ବୋପରି, ନାରୀଜାତିର ପ୍ରଗତି ଓ ସମ୍ମାନ ବୃଦ୍ଧି ପାଇଁ, କୁସଂସ୍କାରରୁ ସମାଜକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ଏକ ସଂସ୍କାରମୁଖୀ ଆଭିମୁଖ୍ୟ ନେଇ ଏହି ପ୍ରତିଭାମୟୀ ସାହିତ୍ୟିକା ନିର୍ଭୀକତାର ସହ ଅବିରାମ ଲେଖନୀ ଚାଳନା କରି ଉତ୍କଳର ବାଣୀଭଣ୍ଡାରରେ ଜ୍ୱଳନ୍ତ ସ୍ୱାକ୍ଷର ରଖିଯାଇଛନ୍ତି । ତାଙ୍କ ବ୍ୟକ୍ତିତ୍ୱ ଯେପରି ବହୁମୁଖୀ, ତାଙ୍କ ସାହିତ୍ୟ ସାଧନା ମଧ୍ୟ ସେହିପରି ବୈଚିତ୍ର୍ୟମୟ । ଦେଶର ସ୍ୱାଧୀନତା ପାଇଁ ତାଙ୍କର ଲେଖନୀ ଯେପରି ହୋଇଥିଲା ସ୍ଫୁଲିଙ୍ଗଧର୍ମୀ, ନାରୀଜାତିର ପ୍ରଗତି ପାଇଁ ତାଙ୍କର ରଚନା ସେହିପରି ଥିଲା ବୈପ୍ଳବିକ ଓ ଆହ୍ୱାନଧର୍ମୀ । ନାରୀଜାଗରଣ ଦିଗରେ ତାଙ୍କର କୃତି ଓ କୀର୍ତ୍ତି ପରବର୍ତ୍ତୀ ଯୁଗ ପାଇଁ ପଥପ୍ରସ୍ତୁତି କରାଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ବାଲ୍ୟ ବିବାହ ନିରୋଧ, ପରଦାତ୍ୟାଗ, ବିଧବା ବିବାହ, ସ୍ତ୍ରୀଶିକ୍ଷା ପ୍ରଚଳନ, କର୍ମକ୍ଷେତ୍ରରେ ନାରୀର ପ୍ରବେଶ ଅଧିକାର ଆଦି ମହତ୍ ଉଦ୍ଦେଶ୍ୟ ନେଇ ପତ୍ରିକାର ସଂପାଦିକା ଭାବରେ ସେ ଯେଉଁଭଳି ଉଦ୍ୟମ କରିଛନ୍ତି, ତାହା ଉତ୍କଳ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।

ଏହି ଅନନ୍ୟସାଧାରଣ ପ୍ରତିଭାର ଅଧିକାରିଣୀ କୁନ୍ତଳାକୁମାରୀ ଜନ୍ମ ହୋଇଥିଲେ ବିଚ୍ଛିନ୍ନ ଉତ୍କଳ ଅଞ୍ଚଳରେ, ସେ ସମୟରେ ମଧ୍ୟପ୍ରଦେଶ ଅନ୍ତର୍ଗତ ବସ୍ତର ଜିଲ୍ଲାରେ । ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆରମ୍ଭ, ଏହି ସନ୍ଧିକ୍ଷଣରେ ୧୯୦୦ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୮ ତାରିଖରେ ଉତ୍କଳଭାରତୀ କୁନ୍ତଳା କୁମାରୀଙ୍କ ଜନ୍ମ । ଓଡ଼ିଶା ମାଠାରୁ ଦୂରରେ ରହି ବ୍ରହ୍ମଦେଶରେ ଇଂରାଜୀ ଓ ବଙ୍ଗଳା ଭାଷା ଶିକ୍ଷା କରିଥିବା ଏହି ଓଡ଼ିଆ ଝିଅ ୧୩ ବର୍ଷରେ ଓଡ଼ିଆ ଭାଷା ଶିଖିବାର ସୁଯୋଗ ଲାଭ କରିଥିଲେ । କୁନ୍ତଳାକୁମାରୀ ହିଁ ଆଧୁନିକ ଯୁଗର ପ୍ରଥମ ବିପ୍ଳବିଣୀ ନାରୀ ଯିଏ ଓଡ଼ିଆ ନାରୀର ଯଥାର୍ଥ ରୂପ, ତାହାର ସମସ୍ୟା, ନିର୍ଯ୍ୟାତନା, ଶକ୍ତିକୁ ସାହିତ୍ୟ ମାଧ୍ୟମରେ ଉପସ୍ଥାପିତ କରିପାରିଥିଲେ ।

୧୯୧୭ ମସିହାରେ କଟକର ଏକମାତ୍ର ବାଳିକା ବିଦ୍ୟାଳୟ ରେଭେନ୍ସା ବାଳିକା ବିଦ୍ୟାଳୟରେ ପାଠପଢ଼ି ଓଡ଼ିଆ ଭାଷା ଶିକ୍ଷା କରି ସେ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ । କୁନ୍ତଳା କଟକ ମେଡ଼ିକାଲ ସ୍କୁଲରେ ଶିକ୍ଷା ଲାଭକଲେ ଓ ୧୯୨୧ ରେ ଡ଼ାକ୍ତରାଣୀ ଭାବରେ ସେବାମୟ ଜୀବନ ଆରମ୍ଭ କଲେ । ଏକାଧାରରେ କଟକ ରେଡ଼କ୍ରସର ତତ୍ତ୍ୱାବଧାରିକା, ଜଣେ ନିପୁଣା ଚିକିତ୍ସିକା ଭାବରେ ଦାୟିତ୍ୱ ପାଳନ, ଏଣେ ଓଡ଼ିଆ ସାହିତ୍ୟ ଓ ଭାଷା ଅଧ୍ୟୟନ, ଅନୁଶୀଳନ, ରଚନା ଏବଂ ସାହିତ୍ୟ ସାଧନା ଦିଗରେ ନିରବଚ୍ଛିନ୍ନ ଉଦ୍ୟମ, ଉଭୟ କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିବାଭଳି ପ୍ରତିଭା କୃତିତ୍ୱ ଦେଖାଯାଏ । ସମାଜ ସଂସ୍କାରରେ ଉଦ୍‌ବୁଦ୍ଧ ହୋଇ ସେ ଆର୍ଯ୍ୟସମାଜରେ ଯୋଗ ଦେଇଥିଲେ । ସେ କୃଷ୍ଣ ପ୍ରସାଦ ବ୍ରହ୍ମଚାରୀଙ୍କୁ ବିବାହ କରିଥିଲେ । ମାତ୍ର ୭ଟି ବର୍ଷ ଓଡ଼ିଶାରେ ରହି ତାଙ୍କୁ ଦିଲ୍ଲୀରେ ସ୍ୱାଧୀନ ଭାବରେ ଡ଼ାକ୍ତରୀ ବ୍ୟବସାୟ କରିବାକୁ ପଡ଼ିଥିଲା ।

୧୯୨୧ ରୁ ୧୯୨୭ ମଧ୍ୟରେ ସେ ବହୁ କବିତା ପୁସ୍ତକ, ଉପନ୍ୟାସ ଓ ସଂସ୍କାରମୂଳକ ନିବନ୍ଧ ରଚନା କରି ଉତ୍କଳ ସାହିତ୍ୟ ଜଗତରେ କୀର୍ତ୍ତିର ସ୍ୱାକ୍ଷର ରଖି ଚହଳ ପକାଇ ଦେଇଥିଲେ । ''ଆହ୍ୱାନ'' ''ଅଞ୍ଜଳି''''ଉଚ୍ଛ୍ୱାସ'', ''ସ୍ଫୁଲିଙ୍ଗ'' ଓ ''ପ୍ରେମ ଚିନ୍ତାମଣି'' ଆଦି ଗ୍ରନ୍ଥସମୂହ ତାଙ୍କ କାବ୍ୟ ପ୍ରତିଭାର ଦ୍ୟୋତକ ଓ ବାହକ । ପ୍ରକୃତିରହସ୍ୟ ଧର୍ମୀ ଆଧ୍ୟାତ୍ମିକ ଚେତନା

ଓ ବିଭୁପ୍ରେମ, ମାନବିକ ପ୍ରଣୟ ଓ ଦେଶାତ୍ମବୋଧ ତାଙ୍କ କାବ୍ୟ-ବିପଣ୍ଣିରେ ବିଭିନ୍ନ ସ୍ୱର ଓ ଛନ୍ଦ ବୈଚିତ୍ର୍ୟ ଅର୍ଜନ କରି ମୂର୍ଚ୍ଛିତ ହୋଇଉଠିଛି । ଗୀତିକବିତାର କ୍ଷେତ୍ର ହିଁ ଥିଲା ତାଙ୍କ ସାରସ୍ୱତ ସାଧନାର ପ୍ରଧାନ ପୀଠ । ନିଜର ଆବେଗ ଓ ଅନୁଭୂତିକୁ ଅତିସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ଭାବରେ ସେ ଗୀତି କବିତା ମଧ୍ୟରେ ହିଁ ପ୍ରକାଶ କରିଯାଇଛନ୍ତି । କବିବର ରାଧାନାଥ, ଭକ୍ତକବି ମଧୁସୂଦନ ପ୍ରମୁଖ କୁନ୍ତଳାଙ୍କର ଅନନ୍ୟ ସାଧାରଣ କାବ୍ୟ ପ୍ରତିଭାର ପ୍ରଶଂସା କରି ଓଡ଼ିଆ ସାହିତ୍ୟରେ ଏହି ଯଶସ୍ୱିନୀ ତରୁଣୀ କବିଙ୍କର ବହୁମୁଖୀ ଅବଦାନ କଥା ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ୧୯୨୧ ରୁ ୧୯୨୭ ମଧ୍ୟରେ ଗଦ୍ୟ ଓ ପଦ୍ୟ ଉଭୟ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ସେ ''ମହିଳାବନ୍ଧୁ 'ସମିତି'' ଦ୍ୱାରା 'ଉତ୍କଳଭାରତୀ' ଉପାଧିରେ ବିଭୂଷିତ ଓ ମୁକ୍ତିମଣ୍ଡପ ସଭା ଦ୍ୱାରା ସମ୍ବର୍ଦ୍ଧିତା ହୋଇସାରିଥିଲେ । ତାଙ୍କର ସଂସ୍କାରଧର୍ମୀ ଉପନ୍ୟାସ ''ପରଶମଣି', 'କାଳିବୋହୂ' ଉପନ୍ୟାସ ଜଗତରେ ଏକ ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ କୁସଂସ୍କାରପୂର୍ଣ୍ଣ ସମାଜର ଜଡ଼ପିଣ୍ଡରେ ଆଘାତ କରି ନବଜାଗରଣର ସୂଚନା ଦେଇଥିଲା । ବହୁ ପତ୍ରିକାର ସଂପାଦନା ଦାୟିତ୍ୱ ବହନ କରିବା ସଙ୍ଗେ ସଙ୍ଗେ ସେ ଯୁଗାନ୍ତକାରୀ ଉପନ୍ୟାସ 'ରଘୁ ଅରକ୍ଷିତ, ରଚନା କରିଥିଲେ ।

୧୯୩୮ ମସିହାରେ ଅର୍ଥାତ୍ ମାତ୍ର ୩୮ ବର୍ଷ ବୟସରେ ସେ ପ୍ରତିଷ୍ଠାର ଉଚ୍ଚତମ ଶିଖରରେ ଥାଇ ଓଡ଼ିଆ ଜାତିର ନେତୃତ୍ୱ ନେଉଥିଲାବେଳେ ତାଙ୍କୁ ଅକାଳରେ ଧରାପୃଷ୍ଠରୁ ବିଦାୟ ନେବାକୁ ହେଲା । ବିପ୍ଳବିଣୀ କୁନ୍ତଳା କୁମାରୀ ଥିଲେ ସର୍ବାନ୍ତଃକରଣରେ ଓଡ଼ିଆ । ବିଚ୍ଛିନ୍ନ ଉତ୍କଳରେ ଜନ୍ମ ହୋଇ, ଓଡ଼ିଶା ମାଟିର ଦୂରରେ ଥାଇ ଏହି ଓଡ଼ିଆ ଝିଅ ଉତ୍କଳର ଗୌରବ ଓ ସ୍ୱାଭିମାନ ସଂପର୍କରେ ସଦା ସଚେତନ ଥିଲେ । ଏହି ମହୀୟସୀ ମହିଳା, ସାହିତ୍ୟ ସାଧିକା ଭାରତୀୟ ସଂସ୍କୃତି କ୍ଷେତ୍ରରେ ଓଡ଼ିଶାର ଗର୍ବ ଓ ଗୌରବ ବୃଦ୍ଧି କରିଥିଲେ । ସମାଜ ସଂସ୍କାର ନିମନ୍ତେ କୁନ୍ତଳା କୁମାରୀଙ୍କର ଶାଣିତ ଲେଖନୀ ସଦା ସଚେଷ୍ଟ ଥିଲା । ଜାତୀୟତାବାଦ, ଆଧ୍ୟାତ୍ମିକତା ଓ ସୌନ୍ଦର୍ଯ୍ୟବୋଧ ତାଙ୍କର କାବ୍ୟ ପ୍ରତିଭାର ତ୍ରିଧାରା । ତାଙ୍କ ରଚନାରେ ବିଶ୍ୱପ୍ରେମର ମହନୀୟ ଭାବଧାରା ସର୍ବତ୍ର ପ୍ରତିଫଳିତ । ୧୯୨୩ ରେ ସେ ତାଙ୍କର ପ୍ରଥମ ଉପନ୍ୟାସ ''ଭ୍ରାନ୍ତି'' ରଚନା କରିଥିଲେ । ''ହିନ୍ଦୀ ସାହିତ୍ୟର କ୍ରମବିକାଶ'' ତାଙ୍କ ଜୀବନର ଶେଷ ଲେଖା ।

କୁନ୍ତଳା କୁମାରୀ ଥିଲେ ଏକାଧାରରେ ରହସ୍ୟବାଦୀ କବି ଏବଂ ନାରୀ ମନର ଅନ୍ତଃସ୍ଥଳରେ ଅବିରତ ବିଚରଣ କରୁଥିବା ଜଣେ ମନସ୍ତତ୍ତ୍ୱବିଶାରଦ ତଥା ଉଚ୍ଚକୋଟୀର ଔପନ୍ୟାସିକା । ସେ ତାଙ୍କ ପ୍ରତିଭା ବଳରେ ଜନମାନସକୁ ନିବିଡ଼ ଭାବରେ ସ୍ପର୍ଶ କରିପାରିଥିଲେ । ପରାଧୀନ ଭାରତରେ ସ୍ୱାଧୀନତା ସଂଗ୍ରାମକୁ ଗତିଶୀଳ କରାଇବା ପାଇଁ ସେ ଅନେକ ଉଦ୍‌ବୋଧନମୂଳକ କବିତା ରଚନା କରିଥିଲେ । ସରକାର ତାଙ୍କର ''ଆହ୍ୱାନ କବିତା ପୁସ୍ତକ ବିକ୍ରୟ ଉପରେ ନିଷେଧାଜ୍ଞା ଜାରି କରିଦେଇଥିଲେ । ଏହି ଅବିଚାର ବିରୁଦ୍ଧରେ ସମଗ୍ର ଦେଶରେ ଉତ୍ତେଜନା ପ୍ରକାଶ ପାଇଥିଲା । ଜନିଷ୍ଠ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ କବି ତାଙ୍କର ଅନ୍ତରର ବହୁ ଅକୁହା ବେଦନାକୁ ଏହି କବିତାରେ ରୂପ ଦେଇଥିଲେ ।

ସାହିତ୍ୟ ହିଁ ଥିଲା କୁନ୍ତଳା କୁମାରୀଙ୍କ ଜୀବନ । ତାଙ୍କ ଜୀବନର ସାହିତ୍ୟିକ ସିଦ୍ଧି ଅଧିକ ଚର୍ଚ୍ଚିତ ଓ ଆଲୋଚିତ ହେବା ଉଚିତ୍ । ତାହାହିଁ ନବୀନ ଯୁଗର ଲେଖକ ଲେଖିକାଙ୍କ ସାହିତ୍ୟ ସାଧନାର ପଥକୁ ଅଧିକ ପ୍ରଶସ୍ତ କରିପାରିବ ଓ ସମାଜକୁ ବଦଳାଇ ପାରିବ ।

କେରଳ ହଷ୍ଟେଲ୍, ରୁମ୍ ନଂ - ୭
ଏସ୍.ସି.ବି. ମେଡ଼ିକାଲ କଲେଜ,
କଟକ - ୭୫୩ ୦୦୭

# ଅଷ୍ଟମ ଶତାବ୍ଦୀର ମାଣିକେଶ୍ୱର ମନ୍ଦିର

**ଶ୍ରୀ ପ୍ରଫୁଲ୍ଲ କୁମାର ବାରିକ**

ଯେଉଁଠି କଥା କହେ ପାଷାଣର ପ୍ରତିମା ଏବଂ ଯେଉଁଠି ପ୍ରତ୍ୟେକ ପଥର ଖଣ୍ଡରେ ଲୁଚି ରହିଛି ଉତ୍କଳର କଳା ଓ ଭାସ୍କର୍ଯ୍ୟର ଜନ୍ମ କୁଣ୍ଡଳି, ସେହି ଗ୍ରାମ କଟକ ଜିଲ୍ଲାର ଶୁକ୍ଳେଶ୍ୱର । ଯେତେବେଳେ ଉତ୍କଳର ପୁରୀ, ଭୁବନେଶ୍ୱର, କୋଣାର୍କ ଓ କପିଳାସ ପ୍ରଭୃତି ସ୍ଥାନମାନଙ୍କରେ ମନ୍ଦିର ନିର୍ମାଣ ହୋଇନଥିଲା, ତାର ୩୫୦ ବର୍ଷ ପୂର୍ବରୁ ଉତ୍କଳର ଏହି କାରୁକୃତି ସଂପନ୍ନ ମନ୍ଦିରଟି ଦିନେ ଉତ୍କଳର ଗର୍ବ ଓ ଗୌରବ ହୋଇ ରହିଥିଲା ବୋଲି ନିଃସନ୍ଦେହରେ କୁହାଯାଇ ପାରିବ । ଏହି ପୀଠର ଅଧିଷ୍ଠାତ୍ରୀ ଦେବୀ ହେଲେ ମା' ଭଗବତୀ । ୧୯୩୩ ମସିହାରେ ଶ୍ରୀ ଶ୍ରୀ ଠାକୁର ଅଭିରାମ ପରମହଂସ ମା ଭଗବତୀଙ୍କର ଅନେକ ବନ୍ଦନା ରଚନା କରି ଦେବୀଙ୍କୁ ସର୍ବଶକ୍ତିମାନ ରୂପେ ବର୍ଣ୍ଣନା କରିଅଛନ୍ତି । ଯେଉଁ କ୍ଷେତ୍ରର ଇତିହାସ କହିଲେ ସରିବ ନାହିଁ, ଯେଉଁ କ୍ଷେତ୍ର ଅଷ୍ଟମ ଶତାବ୍ଦୀର ଜାଜ୍ୱଲ୍ୟମାନ କୀର୍ତ୍ତି ହୋଇ ରହିଥିଲା, ସେହି କ୍ଷେତ୍ର ବିଂଶ ଶତାବ୍ଦୀରେ ବକ୍ଷ ବିଦାରଣ କରି ଆଖିରୁ ଅଶ୍ରୁ ଝରାଇ ପଡି ରହିଥିଲେ ସୁଦ୍ଧା ପ୍ରତ୍ୟେକ ଶିଳା ଦେହରେ ଖୋଦିତ କାରୁକୃତି ଜନମାନସର ଚିତ୍ତବିନୋଦନ କରି ଯୁଗ ଯୁଗ ଧରି ଦଣ୍ଡାୟମାନ ହୋଇ ରହିଛି ।

## ଭୌଗୋଳିକ ପରିବେଶ

କଟକ ଜିଲ୍ଲାର ମାହାଙ୍ଗା ଥାନାରେ ପଡେ ଶୈବକ୍ଷେତ୍ର ଶୁକ୍ଳେଶ୍ୱର ଓ ମାଆ ଭଗବତୀ ପୀଠ । କଟକରୁ କେନ୍ଦ୍ରାପଡା ରାସ୍ତାରେ ଗଲେ ଠିକ୍ ମଧ୍ୟସ୍ଥଳରେ ପଡେ ସାଲେପୁର ବଜାର ଏବଂ ସେଠାରୁ ଉତ୍ତର ପଟ ଦେଇ କୁଆଁପାଳ ରାସ୍ତା । ଏଗାର କିଲୋମିଟର ଅତିକ୍ରମ କଲେ ପଡେ ଖଦୋଳ ବସଷ୍ଟାଣ୍ଡ ଏବଂ ସେଠାରୁ ଗୋଟିଏ କିଲୋମିଟର ପାଦରେ ଅତିକ୍ରମ କଲାପରେ ପଡେ କିମ୍ବଦନ୍ତୀପୂର୍ଣ୍ଣ ଏହି ଐତିହାସିକ ଶୈବକ୍ଷେତ୍ର ଶୁକ୍ଳେଶ୍ୱର । ଏହି କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଦଶଭୁଜା ଦେବୀ ମା ଭଗବତୀ । ଏହି କ୍ଷେତ୍ରଟି ମହାନଦୀ ତ୍ରିକୋଣଭୂମିର ବିରୂପା ଏବଂ ଚିତ୍ରୋତ୍ପଳା ନଦୀର ଦ୍ୱୀପାଂଚଳ ମଧ୍ୟରେ ଅବସ୍ଥିତ । ଏହାର ଦକ୍ଷିଣରେ ମହାନଦୀର ଶାଖାନଦୀ ପୁଣ୍ୟତୋୟା ଚିତ୍ରୋତ୍ପଳା ଏବଂ ଉତ୍ତର ପଟରେ ପୁଣ୍ୟତୋୟା ବିରୂପା ନଦୀ ପୂର୍ବାଭିମୁଖୀ ହୋଇ କୁଳୁ କୁଳୁ ନାଦରେ ବହିଯାଉଛନ୍ତି । ମହୋଦଧିର ସଙ୍ଗମ ପାଇଁ ଏହିପରି ଭାବରେ ଏହି ତ୍ରିକୋଣ ଭୂମି ମଧ୍ୟରେ କେଉଁ ପୁରାତନ କାଳରୁ ଗଢ଼ି ଉଠିଛି ଶୈବ କ୍ଷେତ୍ର ଶୁକ୍ଳେଶ୍ୱର ଓ ମା ଭଗବତୀଙ୍କ ପୀଠ ।

## ଶୈବ କ୍ଷେତ୍ରର ଗଠନ

ଏହି କ୍ଷେତ୍ରଟି ଗୋଟିଏ ଚତୁର୍ଭୁଜାକାର କ୍ଷେତ୍ରପରି । ଏହାର ମୁଖ୍ୟ ମନ୍ଦିରର ନାମ ମାଣିକେଶ୍ୱର ମନ୍ଦିର । ଏହାର ଚାରି କୋଣରେ ଆଠରୁ ଦଶ କିଲୋମିଟର ବ୍ୟବଧାନରେ ଯେଉଁ ମନ୍ଦିରଗୁଡିକ ଅବସ୍ଥିତ, ସେଗୁଡିକ ମଧ୍ୟରେ ଝାଡେଶ୍ୱରପୁର ଗ୍ରାମର ଝାଡେଶ୍ୱର ମନ୍ଦିର, ଭଦ୍ରେଶ୍ୱରଠାରେ ବୀରଭଦ୍ରେଶ୍ୱର ମନ୍ଦିର, ତ୍ରିବେଣୀଶ୍ୱରଠାରେ ତ୍ରିବେଣୀଶ୍ୱର ମନ୍ଦିର ଓ ଗଙ୍ଗେଶ୍ୱରଠାରେ ଗଙ୍ଗେଶ୍ୱର ମନ୍ଦିର ପ୍ରସିଦ୍ଧ ଅଟେ । ଏହି ଚାରିଗୋଟି ମନ୍ଦିରକୁ ନେଇ ଗଢ଼ି ଉଠିଥିବା ଏହି କ୍ଷେତ୍ର ମଧ୍ୟରେ ଥିବା ଗ୍ରାମମାନଙ୍କରେ ମଧ୍ୟ ବହୁ ଶିବ ମନ୍ଦିର ବହୁ ପୁରାତନ କାଳରୁ ଗଢ଼ି ଉଠିଛି, ଯଥା : କେଦାରେଶ୍ୱର ମନ୍ଦିର, ସୁନ୍ଦରେଶ୍ୱର ମନ୍ଦିର ଓ ନୀଳକଣ୍ଠେଶ୍ୱର ମନ୍ଦିର ଇତ୍ୟାଦି ଅନେକ ମନ୍ଦିର । ଏତଦ୍ ବ୍ୟତୀତ ମାଣିକେଶ୍ୱର ମନ୍ଦିର ବେଢ଼ାରେ ବହୁ ସଂଖ୍ୟକ ଶିବଲିଙ୍ଗ ମନ୍ଦିରକୁ ଘେରି ରହିଛନ୍ତି । ବାବା ଗଡେଶ୍ୱର, ଜଗତ ଜନନୀ ଦେବୀ ଦଶଭୁଜା ମା ଭଗବତୀ ଏବଂ ଅଷ୍ଟଭୁଜା ଦେବୀ ମା କନକଦୁର୍ଗାଙ୍କ ମନ୍ଦିର ମଧ୍ୟ ବହୁ ପୁରାତନ କାଳରୁ ମୁଖ୍ୟ ମନ୍ଦିରର ବେଢ଼ା ଭିତରେ ଅବସ୍ଥିତ ।

## ଇତିହାସ

ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ଏହି ମନ୍ଦିରଟି ଅଷ୍ଟମ ଶତାବ୍ଦୀର ବୋଲି ଜଣାପଡେ । ଏହି ଦୃଷ୍ଟିକୋଣରୁ ବିଚାର କଲେ ଉତ୍କଳର ପ୍ରସିଦ୍ଧ ପୁରୀର ଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟ ମନ୍ଦିର, ଭୁବନେଶ୍ୱରସ୍ଥିତ ଲିଙ୍ଗରାଜ ମନ୍ଦିର ଓ କପିଳାସ ମନ୍ଦିରଠୁ ମଧ୍ୟ ମାଣିକେଶ୍ୱର ମନ୍ଦିର ଆହୁରି ପୁରୁଣା । ଅନ୍ୟ ଅର୍ଥରେ 'କହିବାକୁ ଗଲେ ଶୁକ୍ଳେଶ୍ୱରର ମାଣିକେଶ୍ୱର ମନ୍ଦିର ଉପରୋକ୍ତ ମନ୍ଦିରଗୁଡିକର ୩୫୦ ବର୍ଷ ପୂର୍ବରୁ ନିର୍ମିତ ହୋଇ ଉତ୍କଳର କଳା ଓ ଭାସ୍କର୍ଯ୍ୟ କ୍ଷେତ୍ରରେ ଉତ୍କଳୀୟ ଶିଳ୍ପୀମାନଙ୍କର କଳା କୁଶଳତା

ଓ ଅଭିଜ୍ଞତାର ଜନ୍ମ କୁଣ୍ଡଳି ଭାବରେ ପ୍ରମାଣିତ କରି ଛିନ୍ନ ବିଚ୍ଛିନ୍ନ ହୋଇ ପଡିରହିଅଛି ।

## କାରୁକୃତି

ଅଷ୍ଟମ ଶତାବ୍ଦୀରୁ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମିତ ହୋଇଥିବା କଳା ଓ ଭାସ୍କର୍ଯ୍ୟ କ୍ଷେତ୍ରରେ ଶିଳ୍ପୀମାନଙ୍କ ଜନ୍ମକୁଣ୍ଡଳି ହୋଇ ପଡିରହିଥିବା ଭଗ୍ନ ପ୍ରସ୍ତର ମଧ୍ୟରେ କାରୁକାର୍ଯ୍ୟଗୁଡିଏ ଏବେ ମଧ୍ୟ ଦୃଶ୍ୟମାନ ହୁଏ । ସେମାନଙ୍କ ମଧ୍ୟରେ ଶିବମୂର୍ତ୍ତି, ପାର୍ବତୀ, ଉମା ମହେଶ୍ୱର, ଶିବ ତାଣ୍ଡବ, କାଳୀୟ ଦଳନ, ସୂର୍ଯ୍ୟ, ବୃକ୍ଷତଳେ ନାୟିକା, କୃଷ୍ଣବିଳାସିନି, ନରସିଂହ ବିଷ୍ଣୁ, ଗଣେଶ, ଦୁର୍ଗା, ଅଶ୍ୱାରୋହୀ, ରେଖ ମନ୍ଦିର, ଅଭିଲେଖ ଓ ଆହୁରି ଅନେକ କାରୁକୃତି ଦୃଷ୍ଟିଗୋଚର ହୋଇଥାଏ । ମୁଖ୍ୟ ମନ୍ଦିରର ମୁଖଶାଳା ମନ୍ଦିରର ଅନେକ ମୂର୍ତ୍ତି ଓଡିଶା ଓ କଲିକତା ସଂଗ୍ରହାଳୟରେ ମଧ୍ୟ ସ୍ଥାନ ପାଇଛି । ଏତଦବ୍ୟତୀତ ମୁଖ୍ୟ ମନ୍ଦିର ଭିତରେ କୌଣସି ମୂର୍ତ୍ତି ଦୃଷ୍ଟିଗୋଚର ହେଉନଥିଲେ ମଧ୍ୟ ଏହି ମନ୍ଦିରର ଗାତ୍ରରୁ ଏହି ଶିବ ମନ୍ଦିର ଥିବା କଥା ଜଣାପଡେ । ଅବଶ୍ୟ ଏହି ଗାତ୍ରର ଗଭୀରତା ଅନୁମାନ କରି କହିବା କଷ୍ଟକର ।

## ଲୋକକଥା

ଲୋକମୁଖରୁ ଶୁଣାଯାଏ ସେ ଏକଦା ଏଠାରେ ମାଣିକ ନିର୍ମିତ ଏକ ଶିବଲିଙ୍ଗ ଥିଲା । ମହାରାଜା ମାଣିକେଶ୍ୱର ଦେବ ୬୫ ବର୍ଷ କାଳ ରାଜୁତି କରି ମାଣିକେଶ୍ୱର ମନ୍ଦିର ନିର୍ମାଣ କରିଥିବା କଥା ଲୋକଶ୍ରୁତି ଓ ପାଂଜିକାରମାନଙ୍କର ମାଦଳା ପାଂଜିରୁ ଜଣାପଡେ । ଏଥିରୁ ଜଣାପଡେ ଯେ ଏହି ଅଞ୍ଚଳରେ ଅଷ୍ଟମ ଶତାବ୍ଦୀ ବେଳକୁ ଶୈବଉପାସକ ରାଜାମାନେ ରାଜୁତି କରିଆସୁଥିଲେ । ଯଦିଓ ସେହି ସମୟର ରାଜପ୍ରାସାଦ ଏଠାରେ କୌଣସିଠାରେ ଦୃଷ୍ଟିଗୋଚର ହୁଏନାହିଁ, ତଥାପି ରାଜାଙ୍କ ଦ୍ୱାରା ନିର୍ମିତ ହାତୀଶାଳ, ପଲ୍ଲୀସାହି ଓ କେଦାରେଶ୍ୱର ଗ୍ରାମର ଉପକଣ୍ଠରେ ଥିବା ଦୁଇଟି ହସ୍ତୀ ଖୁମ୍ବରୁ ରାଜାଙ୍କ ରାଜୁତି କଥା ଜଣାପଡେ । ଏଠାର ଅନ୍ୟାନ୍ୟ ହାତୀଖୁମ୍ବଗୁଡିକ ୧୮୬୨ ମସିହା ବେଳକୁ କେନାଲ ଖୋଳା ହେବା ସମୟରେ ଭାଙ୍ଗି ନଷ୍ଟ ହୋଇଯାଇଥିବା କଥା ଲୋକଶ୍ରୁତିରୁ ଜଣାଯାଏ । ଏତଦବ୍ୟତୀତ ରାଜାଙ୍କ ଦ୍ୱାରା ନିର୍ମିତ ତିନିଗୋଟି ପୁଷ୍କରିଣୀ ମାଟିତଳେ ପୋତି ହୋଇପଡିଥିଲେ ମଧ୍ୟ ଏବେବି କେତେକାଂଶ ଦୃଷ୍ଟିମାନ ହୁଏ । ରାଜାଙ୍କ ଦ୍ୱାରା ଏହି ପୁଷ୍କରିଣୀଗୁଡିକ ଶୁକ୍ଳେଶ୍ୱର ଗ୍ରାମରେ ତେଲ ପୋଖରୀ, ଅଙ୍ଗ ଗ୍ରାମ ଉପକଣ୍ଠରେ କେଶ ପୋଖରୀ ଓ କେଦାରେଶ୍ୱର ଗ୍ରାମରେ କେଦାରେଶ୍ୱର ପୋଖରୀ ନାମରେ ନାମିତ ହୋଇଥିଲା । ରାଜାଙ୍କ ଦ୍ୱାରା ନିର୍ମିତ ଏହି ପୋଖରୀଗୁଡିକର ପାହାଚଗୁଡିକ ମଧ୍ୟ ମାଟି ତଳେ ପୋତି ହୋଇପଡିଛି । କେଦାରଶ୍ୱର ପୋଖରୀର ପାହାଚଗୁଡିକ ପୂର୍ବପଟେ ଥିବାର ଲୋକଶ୍ରୁତିରୁ ଜଣାପଡେ । ସେତେବେଳେ ରାଜାଙ୍କ ଦ୍ୱାରା କେତେଗୋଟି ମଠ ନିର୍ମିତ ହୋଇଥିଲା । ବର୍ତ୍ତମାନ ଏହି ମଠ-ଗୁଡିକର ଚିହ୍ନବର୍ଣ୍ଣ ନ ଥିଲେ ସୁଦ୍ଧା ସେ ସ୍ଥାନଗୁଡିକର ନାମକରଣ ଏବେ ମଧ୍ୟ ଭାରତୀ ମଠ, ମାଳିମଠ ଓ ଗୌରିଆ ମଠ ନାମରେ ପରିଚିତ ।

ଏହି ମନ୍ଦିରଟି ସଂପୂର୍ଣ୍ଣ ଭାବରେ ବଉଳ ମାଳିଆ ପଥର ଦ୍ୱାରା ନିର୍ମିତ ହୋଇଥିଲା । ନିକଟସ୍ଥ ଲଳିତଗିରି ପର୍ବତରୁ ଏହି ପଥରଗୁଡିକୁ ଅଣାଯାଇଥିଲା । ପୂର୍ବେ ମାଣିକେଶ୍ୱର ମନ୍ଦିର ନିକଟରୁ କୋଇଲିଶ୍ୱର ଲାଞ୍ଜି ନାମକ ଏକ ଛୋଟିଆ ନଦୀ ଚିତ୍ରୋତ୍ପଳା ନଦୀର ଶାଖାନଦୀ ମହିଯୋରାରେ ପଡିଥିଲା । ସେ ସମୟରେ ରାଜା ଲଳିତଗିରି ପାହାଡର ପଥରଗୁଡିକୁ ଏହି ନଦୀ ପଥରେ ଅଣାଉଥିଲେ । ୧୮୬୨ ମସିହା ବେଳକୁ ଯେତେବେଳେ ଏହି ଅଞ୍ଚଳରେ କେନାଲ ଖୋଳାଗଲା ସେତେବେଳେ ଏହି ନଦୀଟି କ୍ରମଶଃ ପୋତି ହୋଇ ପଡିଥିଲା । ପରବର୍ତ୍ତୀ କାଳରେ ସେଠାରେ ଛୋଟ ଛୋଟ ବସ୍ତିମାନ ଗଢ଼ି ଉଠିବା ଫଳରେ ମନ୍ଦିର ନିକଟରେ ଥିବା ନଦୀଟି ସଂପୂର୍ଣ୍ଣ ଭାବରେ ପୋତି ହୋଇପଡିଛି । ଏହାଛଡା ଏଠାରେ ସ୍ଥାନୀୟ ଜମିଦାର ସ୍ୱର୍ଗତ ଭିକାରୀ ଚରଣ ଦାସ ୧୯୨୫ ମସିହାରେ ଏଠାରେ ଏକ ପୁଷ୍କରିଣୀ ଖୋଳାଇଥିଲେ । ଏହି ପୁଷ୍କରିଣୀ ଖୋଳାଇବା ସମୟରେ ଅନେକ ନରକଙ୍କାଳ ମିଳିଥିବା କଥା ଜଣାପଡିଛି । ଏହି ପୁଷ୍କରିଣୀଟି ସ୍ୱର୍ଗତ ଜମିଦାର ଭିକାରୀ ଚରଣ ଦାସଙ୍କ ପତ୍ନୀଙ୍କ ନାମରେ ହୀରା ପୋଖରୀ ବୋଲି ନାମିତ ହୋଇ ରହିଛି ।

## ମା ଭଗବତୀଙ୍କ ମନ୍ଦିର

ଏହି ଶୈବକ୍ଷେତ୍ରଟିର ମୁଖ୍ୟ ମନ୍ଦିର ମାଣିକେଶ୍ୱର ମନ୍ଦିର ହୋଇଥିଲେ ସୁଦ୍ଧା ଏହି କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଦଶଭୁଜା ଦୁର୍ଗା ମା ଭଗବତୀ । ମୁଖ୍ୟ ମନ୍ଦିର ମାଣିକେଶ୍ୱର ମନ୍ଦିରଠାରୁ ୨୦୦ ଫୁଟ ଦୂରରେ ଅବସ୍ଥିତ । ମନ୍ଦିରର ଚାରିପାର୍ଶ୍ୱ କାନ୍ଥରେ ପୂର୍ବରେ ନବଗ୍ରହ, ପଶ୍ଚିମରେ କାର୍ତ୍ତିକ, ଉତ୍ତରରେ ପାର୍ବତୀ ଓ ଦକ୍ଷିଣରେ ଗଣେଶଙ୍କ ବିଗ୍ରହ ରହିଅଛି । ଠିକ ଉତ୍ତର ପାର୍ଶ୍ୱରେ ମାଆଙ୍କ ପାଇଁ ନିର୍ମିତ ରୋଷଗୃହଟି ଅବସ୍ଥିତ । ପୁରୁଣା ରୋଷ ଗୃହଟି ଭାଙ୍ଗି ଯାଇଥିଲେ ସୁଦ୍ଧା ୧୯୯୫ ମସିହା ଜାନୁୟାରୀ ମାସରେ ସ୍ଥାନୀୟ ଯୁବକମାନଙ୍କ ଦ୍ୱାରା ଗୋଟିଏ ନୂତନ ରୋଷ ଗୃହ ନିର୍ମାଣ କରାଯାଇଅଛି । ଠିକ ମନ୍ଦିରକୁ ଲାଗି ମନ୍ଦିରର ସାମନା ପଟରେ ଗୋଟିଏ ବଡ ମୁଖଶାଳା ଭକ୍ତମାନଙ୍କ ବସିବା ପାଇଁ ବହୁ ଦିନରୁ ନିର୍ମିତ ହୋଇରହିଅଛି ।

ଏହିପରି ଗୋଟିଏ ବିରାଟ ଶୈବକ୍ଷେତ୍ରର ପରିବେଷ୍ଟନୀ ମଧ୍ୟରେ ମାଆ ଭଗବତୀଙ୍କର ଆବିର୍ଭାବ ଉତ୍କଳରେ ଥିବା ଶକ୍ତି ପୀଠ ମାନଙ୍କ ଭିତରେ ବିରଳ । ଉତ୍କଳରେ ଥିବା ଶକ୍ତିପୀଠମାନଙ୍କ ମଧ୍ୟରେ ଥିବା କଟକ ଚଣ୍ଡୀ, ଝଙ୍କଡ ବାସିନୀ ସାରଳା, ଯାଜପୁରର ବିରଜା, ବାଣପୁରର ଭଗବତୀ, ବାଙ୍କୀର ଚର୍ଚ୍ଚିକାୟୀ, ଜୟପୁରର ଜଗତଜନନୀ, ଭବାନୀପାଟଣାଠାରେ ମାଣିକେଶ୍ୱରୀ, ରାୟଗଡା ଠାରେ ମାଝିଗୌରୀ, ବ୍ରହ୍ମପୁରଠାରେ ତାରାତାରିଣୀ, ଘଟଗାଁ ଠାରେ ଘଟଗାଁ ତାରିଣୀ, ଚିପିଲିମାଠାରେ ଘଣ୍ଟେଶ୍ୱରୀ, ସମ୍ବଲପୁରରେ ସମଲେଶ୍ୱରୀ ଓ କୋଣାର୍କର ରାମଚଣ୍ଡୀଙ୍କ ବିଗ୍ରହ ଶୁକ୍ଳେଶ୍ୱରର ଭଗବତୀଙ୍କ ବିଗ୍ରହଠୁ ଯଥେଷ୍ଟ ଛୋଟ । ଯଦିଓ ଶୁକ୍ଳେଶ୍ୱରର ଭଗବତୀଙ୍କ ଠାରେ ସାମଞ୍ଜସ୍ୟ ଥିବା ବିଗ୍ରହ ସାଲେପୁର ନିକଟବର୍ତ୍ତୀ ବଟେଶ୍ୱର ଭଗବତୀଙ୍କ ଠାରେ ଲକ୍ଷ୍ୟ କରାଯାଏ କିନ୍ତୁ ତାହା ଉଚ୍ଚତାରେ ବହୁତ କମ ଅଟେ । ସଂପୂର୍ଣ୍ଣ କଳା ମୁଗୁନି ପଥର ଦ୍ୱାରା ନିର୍ମିତ ଏହି ମୂର୍ତ୍ତିର ଆନୁମାନିକ ଉଚ୍ଚତା ୧୨ ଫୁଟ । ଏହି ବିଗ୍ରହ ମା ଦୁର୍ଗାଙ୍କର ମହିଷାମର୍ଦ୍ଦିନୀ ଦଶଭୁଜା ଅବତାର । କାଳର କରାଳଗତିରେ ମାଆଙ୍କର କେତୋଟି ହାତ, କହୁଣିର ଖଣ୍ଡା ନିକଟରୁ ଖସି ପଡିଥିଲେ ସୁଦ୍ଧା ଅଦ୍ୟାବଧି ମାଆ ଭଗବତୀଙ୍କର ମୂର୍ତ୍ତି ନିଖୁଣ ଭାବରେ ଭକ୍ତମାନଙ୍କ ପାଇଁ ଦଣ୍ଡାୟମାନ ।

## ପର୍ବ ପର୍ବାଣୀ

ଏହି ପୀଠରେ ମାଆ ଭଗବତୀଙ୍କ ସେବାୟତମାନେ ମାଆଙ୍କୁ ସ୍ନାନ କରାଉବା ପରେ ବାରହାତ ଲମ୍ବ ବିଶିଷ୍ଟ ଶାଢ଼ୀ ପିନ୍ଧାଇ ମୁଖରେ ଚନ୍ଦନ ଓ ସିନ୍ଦୂର ପିନ୍ଧାଇ ବେଶ କରାଇଥାନ୍ତି । ଏହାପରେ ଦୂରଦୂରାନ୍ତରୁ ଆସିଥିବା ଅଗଣିତ ଭକ୍ତମାନଙ୍କର ଭୋଗ ମାଆଙ୍କ ପାଖରେ ଚଢ଼ା ଯାଇଥାଏ । ପ୍ରତିଦିନ ଦ୍ୱିପହରର ନୀତିକାର୍ଯ୍ୟ (ଅନ୍ନଭୋଗ) ସମାପନା ପରେ ମନ୍ଦିରରେ ପହଡ ପଡିଥାଏ । ସମୟ ଦିନ ଗୋଟାଏ ଠାରୁ ତିନିଟା ଯାଏ ପହଡ ପଡେ । ତାପରେ ଭକ୍ତମାନଙ୍କ ଦର୍ଶନ ନିମନ୍ତେ ପୁଣି ଦିନ ତିନିଟା ଠାରୁ ରାତ୍ର ଆଠଟା ଯାଏ ମନ୍ଦିର ଖୋଲାଯାଇଥାଏ । ଏହି ସମୟ ଭିତରେ ମନ୍ଦିରର ସଂଧ୍ୟା ଆଳତୀ କାର୍ଯ୍ୟ ସମାପନା କରାଯାଇ ପୁଣି ପହଡ ପଡିଥାଏ । ମାଆ ଭଗବତୀଙ୍କ ପୀଠରେ କାର୍ତ୍ତିକ ପୂର୍ଣ୍ଣିମାର ଫୁଲରଥ ସମାରୋହ ଏକ ଶ୍ରେଷ୍ଠ ଓ ଆକର୍ଷଣୀୟ ପର୍ବ ଅଟେ । ଏହା ବ୍ୟତୀତ ଦୁର୍ଗାପୂଜା ଓ ପ୍ରତ୍ୟେକ ପୂର୍ଣ୍ଣିମା ଓ ସଂକ୍ରାନ୍ତି ଦିନ ମାଆଙ୍କର ଦର୍ଶନ ନିମନ୍ତେ ଅସଂଖ୍ୟ ଦର୍ଶନାର୍ଥୀଙ୍କର ଭିଡ ଲାଗିଥାଏ । ପୁନଶ୍ଚ ଶିବରାତ୍ରି ଦିନ ଜାଗର ଯାତ୍ରା ମଧ୍ୟ ମହାସମାରୋହରେ ପାଳିତ ହୋଇଥାଏ । ପ୍ରତିବର୍ଷ ଶ୍ରାବଣ ମାସରେ ବହୁ ଦୂର ଦୂରାନ୍ତରୁ ପୀତଲୋହିତ ବସ୍ତ୍ର ପରିଧାନ କରିଥିବା ଜଳପତ୍ରଧାରୀ ଭକ୍ତମାନଙ୍କର ସମାବେଶ ଯୋଗୁଁ ଶ୍ରୀ ଶ୍ରୀ ମାଣିକେଶ୍ୱର ଶୈବ କ୍ଷେତ୍ରଟି ''ବୋଲ ବମ୍'' ଧ୍ୱନିରେ ଗୋଟିଏ ମାସ ଧରି ମୁଖରିତ ହୋଇଉଠେ ।

## ସଂଗ୍ରହାଳୟ

୧୫୫୬ ମସିହାରେ ଯେତେବେଳେ ଉତ୍କଳରେ କଳାପାହାଡ ଆକ୍ରମଣ କରିଥିଲା, ସେତେବେଳେ କିମ୍ବା ରକ୍ଷଣାବେକ୍ଷଣ ଅଭାବରୁ ଶ୍ରୀ ଶ୍ରୀ ମାଣିକେଶ୍ୱର ମନ୍ଦିରଟି ବର୍ତ୍ତମାନ ଭଗ୍ନପ୍ରାୟ । ସମୟାନୁକ୍ରମେ କର୍ପୁର ଉଡିଯାଇଥିଲେ ସୁଦ୍ଧା ଯେଉଁ କନା ଖଣ୍ଡିକ ପଡି ରହିଛି, ତାହାକୁ ସାଇତି ରଖିବା ଶକ୍ତି ସ୍ଥାନୀୟ ଗ୍ରାମବାସୀଙ୍କ ପାଖରେ ନାହିଁ । ତେଣୁ ଏହି ମନ୍ଦିରକୁ ୧୯୭୮ ମସିହାରେ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ହାତକୁ ନେଇ ମନ୍ଦିରର ରକ୍ଷଣାବେକ୍ଷଣ ନିମନ୍ତେ ଏଠାରେ ଗୋଟିଏ ଛୋଟ ସଂଗ୍ରହାଳୟ ନିର୍ମିତ କରି ଅନେକ ସୁନ୍ଦର କାରୁକୃତି ସଂପନ୍ନ ମୂର୍ତ୍ତିମାନ ସଜାଡ଼ି ରଖିଅଛନ୍ତି । ଏହି ସଂଗ୍ରହାଳୟ ଦାୟିତ୍ୱରେ ଦୁଇଜଣ କର୍ମଚାରୀ ମଧ୍ୟ ନିୟୁକ୍ତି ପାଇ ଏଠାରେ କାର୍ଯ୍ୟ କରୁଅଛନ୍ତି ।

ଅତ୍ୟନ୍ତ ଦୁଃଖର ବିଷୟ ଓଡିଶାର ଏହିଭଳି ଏକ ଶୈବ କ୍ଷେତ୍ର ଓ ଶକ୍ତି ପୀଠ ଦିନକୁ ଦିନ ବସୁଧା ବକ୍ଷରେ ଯେଉଁଭଳି ଭାବରେ ଲୀନ ହେବାକୁ ବସିଛି, ତାହା ଆଖିରେ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ସ୍ଥାନୀୟ ଗ୍ରାମବାସୀମାନଙ୍କର ସହଯୋଗ, ଉତ୍ସାହ ତଥା ସରକାରଙ୍କ ସାହାର୍ଯ୍ୟ ପାଇ ଏହି କ୍ଷେତ୍ର ଏକ ବିଶିଷ୍ଟ ପର୍ଯ୍ୟଟନ କ୍ଷେତ୍ର ରୂପେ ପ୍ରତିଷ୍ଠିତ ହୋଇପାରିବ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏହି କ୍ଷେତ୍ରର ସର୍ବାଙ୍ଗୀନ ଉନ୍ନତି କଳ୍ପେ ରାସ୍ତାର ସୁବିଧା, ଆଲୋକର ବ୍ୟବସ୍ଥା, ଯାତ୍ରୀମାନଙ୍କ ପାଇଁ ବିଶ୍ରାମଗାର ଓ ବିକ୍ଷିପ୍ତ ହୋଇ ପଡିଥିବା କାରୁକୃତି କଳାକୁ ସଜାଡ଼ି ରଖି, ବୃକ୍ଷ ରୋପଣ କରି ମାଟିତଳେ ପୋତି ହୋଇ ପଡିଥିବା ଶିବଲିଙ୍ଗଗୁଡିକୁ ଉଦ୍ଧାର କରି ଏହା ଉପରେ ଛୋଟ ଛୋଟ ମନ୍ଦିର ନିର୍ମାଣ କଲେ ଏହା ନିଶ୍ଚିତ ଭାବରେ ଏକ ବିଶିଷ୍ଟ ପର୍ଯ୍ୟଟନ କେନ୍ଦ୍ର ହେବ ଓ ଉତ୍କଳର ବହୁ ପୁରାତନ କାରୁକୃତିଗୁଡିକର ରକ୍ଷା ହୋଇପାରିବ । ଏଣୁ ଏହି ଐତିହାସିକ ପୀଠ ଓ କିମ୍ବଦନ୍ତୀ ଧାମର ସୁରକ୍ଷା ପାଇଁ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ, ଓଡିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଓ ସ୍ଥାନୀୟ ଲୋକପ୍ରତିନିଧି ତଥା ସ୍ଥାନୀୟ ଲୋକଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଶୁକ୍ଳେଶ୍ୱର, ସୁକ୍ରୁତା
କଟକ

# ଖାଦ୍ୟ ଓ ଜୀବନ

ଡଃ ପ୍ରଫୁଲ୍ଲ କୁମାର ମହାନ୍ତି

ଲାଲ୍ ବାହାଦୁର ଶାସ୍ତ୍ରୀଙ୍କ ଭାଷାରେ - ''ଲୋକମାନଙ୍କ ନିମିତ୍ତ ଖାଦ୍ୟ ହିଁ ଜୀବନ ଓ ମୃତ୍ୟୁ । ଆମକୁ ହିଁ ଯଥେଷ୍ଟ ଖାଦ୍ୟ ସେମାନଙ୍କୁ ଯୋଗାଇବାକୁ ହେବ'' । ("Food is a matter of Life and Death for People. We have to give them enough to eat."- Shri Lal Bahadur Shastri)

ଶାସ୍ତ୍ରୀଙ୍କ ଉପରୋକ୍ତ ଉକ୍ତିଟି ବାସ୍ତବିକ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସାଧାରଣ ଭାଷାରେ କହିବାକୁ ଗଲେ ବୃଦ୍ଧି, ବିକାଶ, ଚଳନ ଓ ଉତ୍ପାଦନକ୍ଷମ ନିମିତ୍ତ ଆବଶ୍ୟକ ପଡୁଥିବା ପଦାର୍ଥ ହିଁ ଖାଦ୍ୟ । ବୈଜ୍ଞାନିକମାନେ ଏହି ଆବଶ୍ୟକୀୟ ପଦାର୍ଥଗୁଡ଼ିକୁ ଛଅ ଭାଗରେ ବିଭକ୍ତ କରିଛନ୍ତି । ସେଗୁଡ଼ିକ ହେଉଛି- (୧) ଶ୍ୱେତସାର, (୨) ପୁଷ୍ଟିସାର, (୩) ସ୍ନେହସାର,(୪) ଜୀବନିକା,(୫) ଖଣିଜଲବଣ ଓ (୬) ଜଳ । ଏଥିମଧ୍ୟରୁ ପ୍ରଥମ ତିନୋଟି ଉପାଦାନ ଶକ୍ତି ଉତ୍ପାଦକ । ବୃଦ୍ଧି ଓ ଟିସୁ ବା କୋଷଗୁଡ଼ିକ ପରିଚାଳନା ପାଇଁ ଆବଶ୍ୟକ ହେବା ସ୍ଥଳେ ଶେଷ ତିନୋଟି ପଦାର୍ଥ ରାସାୟନିକ ପ୍ରକ୍ରିୟା ନିମିତ୍ତ ଆବଶ୍ୟକ ହୋଇଥାଏ । ଏସବୁ ବ୍ୟତୀତ ଶରୀରର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରୁଥିବା ସୁନିର୍ବାଚିତ ଖାଦ୍ୟ ଅର୍ଥାତ୍ ''ସୁଷମ ଖାଦ୍ୟ' (Balanced died) ହିଁ ସମସ୍ତଙ୍କ ପାଇଁ ଆବଶ୍ୟକ । ତେଣୁ ସାଧାରଣ ସୁସ୍ଥ ଓ କାର୍ଯ୍ୟକ୍ଷମ ଶରୀର ପାଇଁ ସବୁପ୍ରକାର ଖାଦ୍ୟ ଅପରିହାର୍ଯ୍ୟ । ସୁଷମଖାଦ୍ୟ ବା ଖାଦ୍ୟ ଉପାଦାନରୁ କୌଣସିର ଅଭାବ ଘଟିଲେ ସୁସ୍ଥ ଶରୀର ଗଠନ ସମ୍ଭବ ହୋଇ ପାରିବ ନାହିଁ । ଶରୀର ଅକାମୀ ହୋଇଯିବ । ଦେଶ ବା ଜାତି ପାଇଁ ରୋଗାଗ୍ରସ୍ତ ଶରୀର ସମସ୍ୟା ଉପରେ ଆଉ ଗୋଟିଏ ସମସ୍ୟା ହୋଇଯିବ ।

## ଖାଦ୍ୟର ଆବଶ୍ୟକତା

ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ଏପରିକି ଦେଶ ଓ ଜାତି ପର୍ଯ୍ୟରେ ଖାଦ୍ୟ ସମସ୍ୟା ଗୋଟିଏ ପ୍ରଧାନ ଓ ଜଟିଳ ସମସ୍ୟା । କାରଣ ଏହାରି ଉପରେ ହିଁ ବ୍ୟକ୍ତିର, ଜାତିର ଓ ଦେଶର ଉନ୍ନତି ନିର୍ଭର କରେ । ଅବଶ୍ୟ ଆମେମାନେ ଖାଇବାକୁ ବଞ୍ଚିନାହୁଁ । ବଞ୍ଚିବାକୁ ଖାଉ । ଏହା ବୋଲି ଯାହା ତାହା ଖାଇଲେ ଚଳିବ ନାହିଁ । ବଞ୍ଚିବା ଲାଗି ଉପଯୁକ୍ତ ଭାବରେ ବଞ୍ଚିବା ଉଚିତ ଏବଂ ସେଥିଲାଗି ଉପଯୁକ୍ତ ଖାଦ୍ୟ ଆବଶ୍ୟକ । ଖାଦ୍ୟ ଆମକୁ କେବଳ କାର୍ଯ୍ୟକାରୀ ଶକ୍ତି ମଧ୍ୟ ଯୋଗାଏ, ତାହା ନୁହେଁ । ମାନସିକ ବିକାଶ ଓ ରୋଗ ପ୍ରତିରୋଧ ପାଇଁ ଶକ୍ତି ଯୋଗାଏ । ଉଦ୍ଭିଦଜାତ ଖାଦ୍ୟରେ ପ୍ରଧାନ ଶକ୍ତି ପ୍ରଦାନକାରୀ ଉତ୍ପାଦନ ଶର୍କରା ଏବଂ ଅଧିକାଂଶ ଖାଦ୍ୟପ୍ରାଣ ଓ ଲବଣ ରହିଛି । ତେଣୁ ଖାଦ୍ୟରୁ ପ୍ରାଣିଜାତ କିମ୍ବା ଉଦ୍ଭିଦଜାତ ଦ୍ରବ୍ୟରୁ କୌଣସିଟିକୁ ବାଦ୍ ଦିଆଯାଇ ନପାରେ । ପ୍ରାଣିଜାତ ଖାଦ୍ୟରୁ ଅଧିକ ଉତ୍ତାପ ଜାତ ହେଉଥିବାରୁ ଗ୍ରୀଷ୍ମପ୍ରଧାନ ଜଳବାୟୁ ପାଇଁ ଅତ୍ୟଧିକ ପ୍ରାଣିଜାତ ଖାଦ୍ୟ ମଧ ଉପଯୁକ୍ତ ନୁହେଁ । ସେଥିପାଇଁ ଆର୍ଯ୍ୟମାନେ ଭାରତରେ ପଦାର୍ପଣ କଲାବେଳେ ଯଦିଓ ମାଂସାସୀ ଥିଲେ, ଅନୁଭୂତି ହିଁ କାଳକ୍ରମେ ସେମାନଙ୍କୁ ନିରାମିଷାଶୀ ହେବାକୁ ବାଧ କରିଛି । ତେବେ ମୋଟାମୋଟି ଦେଖିବାକୁ ଗଲେ ଆମ ଖାଦ୍ୟର ମୁଖ୍ୟ ଅଂଶ ଉଦ୍ଭିଦରୁ ମିଳିଥାଏ । ସୁତରାଂ ଏଥିପାଇଁ କୃଷି ହିଁ ମୂଳ । କୃଷିଜାତ ପଦାର୍ଥ ହିଁ ଆମ ଖାଦ୍ୟର ମୁଖ୍ୟ ଚାହିଦା ମେଣ୍ଟାଇଥାଏ ।

## କୃଷିର ପ୍ରାଧାନ୍ୟ

ଭାରତର ଦୁଇ ତୃତୀୟାଂଶ ଲୋକ କୃଷିରେ ନିଯୁକ୍ତ । ତାହହିଁ ଭାରତର ଅର୍ଥନୈତିକ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ । କହିବାକୁ ଗଲେ ଏହା ଲୋକମାନଙ୍କର ପ୍ରଧାନ ଜୀବିକା ନିର୍ବାହ ପନ୍ଥା । କାରଣ ଆମ ଦେଶର ଶତକଡା ୭୦ ଭାଗ ଲୋକ ନିଜ ଜୀବିକାର୍ଜନ ପାଇଁ କୃଷି ଉପରେ ନିର୍ଭରଶୀଳ । କୃଷି ଭାରତୀୟ ଅର୍ଥବ୍ୟବସ୍ଥାର ସର୍ବବୃହତ ଉଦ୍ୟୋଗ । ଏହା ଭାରତୀୟ ଅର୍ଥ ବ୍ୟବସ୍ଥାର ମେରୁଦଣ୍ଡ ଏବଂ ଦେଶର ଅର୍ଥନୈତିକ ବିକାଶରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ୧୯୦୧ ଓ ୧୯୮୧ ମସିହା ମଧ୍ୟରେ କୃଷି ଉପରେ ନିର୍ଭର କରୁଥିବା ଲୋକଙ୍କ ଅନୁପାତ ଆମ ଦେଶରେ ପ୍ରାୟ ସ୍ଥିର ରହୁଥିବା ବେଳେ ବ୍ରିଟେନ ଓ ଆମେରିକା ପରି ଉନ୍ନତ ଦେଶମାନଙ୍କରେ କୃଷି ଉପରେ ନିର୍ଭରଶୀଳ ଲୋକଙ୍କ ଅନୁପାତ ହ୍ରାସ ପାଇବାରେ ଲାଗିଛି । ଭାରତରେ କୃଷିରେ ନିଯୁକ୍ତ ଶ୍ରମିକଙ୍କ ସଂଖ୍ୟା (ଶତାଂଶ) କ୍ରମାଗତଭାବେ ବୃଦ୍ଧି ପାଇବାରେ ଲାଗିଛି ଏବଂ କୃଷି ହିଁ କର୍ମସଂସ୍ଥାର ପ୍ରଧାନ ଉତ୍ସ ହୋଇରହିଛି ।

କୃଷି ଲୋକଙ୍କ ପାଇଁ ଖାଦ୍ୟ ଯୋଗାଇ ଦେଇଥାଏ । ମୋଟ ଖାଉଟି ବ୍ୟୟର ଶତକଡ଼ା ପ୍ରାୟ ୮୦ ଭାଗ କୃଷିଜାତ ଦ୍ରବ୍ୟ ପରେ

କରାଯାଇଥାଏ ଏବଂ ମୋଟ ବ୍ୟୟର ଶତକଡ଼ା ପ୍ରାୟ ୬୩ ଭାଗ ଖାଦ୍ୟ ଉପରେ କରାଯାଇଥାଏ । ଏପରି ସ୍ଥଳେ ଜାତୀୟ ଅର୍ଥନୀତିରେ କୃଷି ଉତ୍ପାଦନରେ ହ୍ରାସବୃଦ୍ଧି ଯେ କିପରି ମହତ୍ୱପୂର୍ଣ୍ଣ, ତାହା ସହଜରେ ଅନୁମେୟ । ଦେଶର ବହୁ ଭାଗ ଲୋକଙ୍କର କ୍ରୟଶକ୍ତି କୃଷି ଉତ୍ପାଦନରେ ହ୍ରାସ ବୃଦ୍ଧି ସହିତ ସଂପୃକ୍ତ । କୃଷି ଯେ କେବଳ ଲୋକଙ୍କ ସମଗ୍ର ଖାଦ୍ୟ ଆବଶ୍ୟକତା ପୂରଣ କରେ ତାହା ନୁହେଁ । କୋଟି କୋଟି ଗୋମହିଷାଦି ପଶୁଙ୍କ ନିମିତ୍ତ ଗୋଖାଦ୍ୟ ବ୍ୟବସ୍ଥା ମଧ କରିଥାଏ ।

ବିକାଶଶୀଳ ଦେଶମାନଙ୍କର ଅର୍ଥ ବ୍ୟବସ୍ଥାରେ କୃଷିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହି ପରିପ୍ରେକ୍ଷୀରେ ହିଁ କୃଷି ବିକାଶର ଗୁରୁତ୍ୱ ବୃଦ୍ଧି ପାଇଛି । ବାସ୍ତବରେ, କୃଷିବିକାଶ ଶିଳ୍ପ ବିକାଶ ପାଇଁ ପୂର୍ବାବଶ୍ୟକତା । ଉଭୟ ପରସ୍ପରର ପରିପୂରକ,ପ୍ରତିଯୋଗୀ ନୁହଁନ୍ତି ଆଦୌ । ଅର୍ଥନୈତିକ ବିକାଶ ପ୍ରକ୍ରିୟାରେ କୃଷିର ବିଶେଷ ଅବଦାନ ରହିଛି । ପ୍ରଥମତଃ କୃଷି ମୌଳିକ ମଜୁରୀ ଦ୍ରବ୍ୟ ବା ଖାଦ୍ୟ ପଦାର୍ଥ ଯୋଗାଇଥାଏ । ଖାଦ୍ୟାଭାବ ଅର୍ଥ ବ୍ୟବସ୍ଥାରେ ଅସମତୁଲତା ଆଣିଦିଏ । ଖାଦ୍ୟଦ୍ରବ୍ୟ ଦରବୃଦ୍ଧି ଘଟିଲେ ଶିଳ୍ପ କ୍ଷେତ୍ରରେ ଅଧିକ ମଜୁରୀ ପାଇ ଦାବି ହୁଏ । ଦ୍ୱିତୀୟତଃ କୃଷିକ୍ଷେତ୍ର ଶିଳ୍ପକ୍ଷେତ୍ରକୁ କଞ୍ଚାମାଲ ଯୋଗାଇ ଥାଏ । କୃଷିଜାତ ଦ୍ରବ୍ୟଗୁଡ଼ିକ ଅମଳ ହୋଇ ନ ପାରିଲେ ଶିଳ୍ପ କ୍ଷେତ୍ରରେ ଚରମ ବିପର୍ଯ୍ୟୟ ଦେଖାଦିଏ । ତୃତୀୟତଃ, କୃଷିଜାତ ଦ୍ରବ୍ୟଗୁଡ଼ିକର ରପ୍ତାନୀ ଯୋଗୁଁ ଦେଶ ବୈଦେଶିକ ବିନିମୟ ମୁଦ୍ରା ଅର୍ଜନ କରିଥାଏ । ଚତୁର୍ଥତଃ, ଜାତୀୟ ଆୟର ଏକ ବଡ଼ ଅଂଶ କୃଷିରୁ ମିଳୁଥିବାରୁ କୃଷିଆୟ ଓ ସଞ୍ଚୟ ବୃଦ୍ଧି କରିଥାଏ ଏବଂ ଅର୍ଥନୈତିକ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥାଏ । ପଞ୍ଚମତଃ, କୃଷି ବିକାଶରେ ବାଧା ଘଟିଲେ ଶିଳ୍ପଜାତ ଦ୍ରବ୍ୟଗୁଡ଼ିକ ପାଇଁ ବଜାର ସୃଷ୍ଟିହେବା ଅସମ୍ଭବ ହୋଇପଡ଼ିବ । ତେଣୁ ଦେଶର ଶିଳ୍ପାୟନ କାର୍ଯ୍ୟକ୍ରମ ଓ ସାଧାରଣ ଅର୍ଥନୈତିକ ବିକାଶରେ ବର୍ତ୍ତମାନ କୃଷି ଉତ୍ପାଦନର ତାତ୍ପର୍ଯ୍ୟପୂର୍ଣ୍ଣ ଅବଦାନ ରହିଛି ।

କୃଷି ଜାତୀୟ ଅର୍ଥନୀତିରେ ଏକ କେନ୍ଦ୍ରୀୟସ୍ଥାନ ଅଧିକାର କରିଛି ଏଥିରେ ଦ୍ୱିମତ ନାହିଁ । ରାଜ୍ୟ ସରକାରମାନଙ୍କ ଆର୍ଥିକସ୍ଥିତି ବହୁ ପରିମାଣରେ କୃଷି ଉପରେ ନିର୍ଭରଶୀଳ । ଏହା ସଞ୍ଚୟ ଓ ପୁଞ୍ଜିଗଠନର ମୂଳ ଉତ୍ସ । ତେଣୁ ଏହା ଯଥାର୍ଥରେ ଭାରତୀୟ ଅର୍ଥନୀତିର ମେରୁଦଣ୍ଡ ରୂପେ ବିବେଚିତ । ଦ୍ରୁତ ଅର୍ଥ ନୈତିକ ଓ ସାମାଜିକ ବିକାଶ ଲାଗି କୃଷି ବିକାଶ ସର୍ବାଦୌ ଆବଶ୍ୟକ । କୃଷି ଭାରତୀୟ ଅର୍ଥବ୍ୟବସ୍ଥାର ସର୍ବବୃହତ୍ତ ଉଦ୍ୟୋଗ ।

## ଖାଦ୍ୟ ସମସ୍ୟାର କାରଣ

ଭାରତ ଏକ କୃଷିପ୍ରଧାନ ଦେଶ ଓ କୃଷି ଏହାର ମେରୁଦଣ୍ଡ ହୋଇ ମଧ ଏଠାରେ ସମସ୍ତେ ଓଳିଏ ଭଲ କରି ଖାଇବାକୁ ପାଉନାହାନ୍ତି । ବାସ୍ତବିକ ଏହା ବଡ଼ ପରିତାପର ବିଷୟ । ଜଣେ ବ୍ୟକ୍ତି ଉପବାସ ବା ଅନାହାର ରହିଲେ ବା ପେଟକୁ ଭଲ କରି ଟିକିଏ ଖାଇବାକୁ ନପାଇଲେ ସେ ଅନ୍ୟସବୁ କୁକର୍ମ ବା ଦୁଷ୍କର୍ମ ଆଦି ନ କରିବ ବା କାହିଁକି ? ଆଜି ସମସ୍ତେ ଏକସ୍ୱରରେ କହୁଛନ୍ତି ଯେ ଭାରତବର୍ଷର ଦୁର୍ନୀତି ଚାରିଆଡ଼େ ଗ୍ରାସ କରିଛି । ତାହାର ମତରେ ମୂଳକାରଣ ଖାଦ୍ୟାଭାବ ଆଉ କିଛି ନୁହେଁ । ଖାଦ୍ୟ ଟିକକ ପାଇଁ ମନୁଷ୍ୟ ଯେ କୌଣସି ପ୍ରକାର ଅସତ୍ ପ୍ରକାର ସଂଗ୍ରାମ ମାଧ୍ୟମରେ ଖାଦ୍ୟ ସଂଗ୍ରହର ମାଧ୍ୟମ ଠିକ୍ କରିପାରେ । ତେବେ ପ୍ରଶ୍ନ ଉଠୁଛି ଏ ଖାଦ୍ୟ ସମସ୍ୟାର କାରଣ ଗୁଡ଼ିକ କଅଣ ? ଏହାର କାରଣ ଗୁଡ଼ିକ ହେଲା

୧) ସଠିକ୍ ପରିମାଣର ଆବଶ୍ୟକ ମୁତାବକ ଖାଦ୍ୟର ନିଅଣ୍ଟ ।

୨) ଖାଉଥିବା ଖାଦ୍ୟର ଖାଦ୍ୟଗୁଣର ଅଭାବ ବା ଅନୁପଯୁକ୍ତ ।

୩) ବଂଚି ରହୁଥିବା ଲୋକଙ୍କର ଦାରିଦ୍ର୍ୟ ହେତୁ ଉପବାସ ଅର୍ଥାତ ମୃତ୍ୟୁ ସହ ସଂଗ୍ରାମ ।

୧୯୮୨ ମସିହା ଜାନୁଆରୀ ମାସ ୨୦ ତାରିଖରେ ମୂଳ ବିଂଶସୂତ୍ରୀ କାର୍ଯ୍ୟକ୍ରମର ପରିମାର୍ଜିତ କାର୍ଯ୍ୟକ୍ରମ ଘୋଷଣା କରାଗଲା । ଏହି କାର୍ଯ୍ୟକ୍ରମରେ ଅର୍ଥନୈତିକ ପ୍ରଗତିକୁ ଆଖିରେ ରଖି ଲୋକମାନଙ୍କର ଅଭାବ ମେଣ୍ଟାଇବା ଉଦ୍ଦେଶ୍ୟରେ ଅଧିକ ଧ୍ୟାନ ଦିଆଯାଇଥିଲା ଉତ୍ପାଦନ ବୃଦ୍ଧିରେ । ସେଥିରେ ୧୯୮୨ (Year of Productivity) ମସିହା ଶେଷ ଭାଗଟି "ଉତ୍ପାଦନ ବର୍ଷ" ଭାବରେ ଘୋଷଣା କରାଗଲା । ୧୯୮୬ ମସିହା ଅଗଷ୍ଟ ୨୦ରେ ସ୍ୱର୍ଗତ ରାଜୀବ ଗାନ୍ଧୀ ସ୍ୱାଧୀନତା ଦିବସ ଭାଷଣରେ ଦାରିଦ୍ର୍ୟ ଦୂରୀକରଣ ଉପରେ ଆଲୋକପାତ କରିଥିଲେ । ତାଙ୍କ ସମୟରେ ମୂଳ ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ଆଉ ପାଞ୍ଚଟି ନୂତନ କାର୍ଯ୍ୟକ୍ରମର ଆୟୋଜନ କରିଥିଲେ । ଏ ପାଞ୍ଚଟି କାର୍ଯ୍ୟକ୍ରମ ମଧ୍ୟରେ ପ୍ରଥମଟି ଥିଲା "ଗ୍ରାମାଞ୍ଚଳରୁ ଦାରିଦ୍ର୍ୟ ଦୂରୀକରଣ" । ତାଙ୍କ ଭାଷଣରେ ସେ ଗୁରୁତ୍ୱ ପ୍ରଦାନ କରି ଉପସ୍ଥାପନ କରିଥିଲେ ଯେ ଉତ୍ପାଦନ ବୃଦ୍ଧିକରି, ଆୟର ଅସମତା ହ୍ରାସକରି ତଥା ଜୀବନଧାରଣର ମାନ ଉନ୍ନତି କରି ଦାରିଦ୍ର୍ୟ ଅନାଟନ ସମ୍ବନ୍ଧରେ ଯୁଦ୍ଧ ବା ସଂଗ୍ରାମ ଚଳାଇବା ତେବେ ଏସବୁ ଆଲୋଚନାରୁ ପରିଲକ୍ଷିତ ହୁଏ ଯେ ସ୍ୱାଧୀନତାର ଆରମ୍ଭରୁ ଏ ଦେଶର ଦାରିଦ୍ର୍ୟ ଦୂର କରିବା ପାଇଁ ସ୍ଲୋଗାନ ଓ ପ୍ରଚେଷ୍ଟା ଅବ୍ୟାହତ ରହିଛି । ତଥାପି ସମାଧାନ ହୋଇପାରିନାହିଁ । ଅନାହାରରେ ମୃତ୍ୟୁ ପ୍ରତ୍ୟେକଦିନ ପ୍ରକାଶ ପାଉଛି ।

### ଖାଦ୍ୟାଭାବର କାରଣ :

ଦାରିଦ୍ର୍ୟ ବା ଖାଦ୍ୟାଭାବ ଆମ ଦେଶରେ ଘଟୁଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବିଭିନ୍ନ ଉପାୟରେ ବୈଜ୍ଞାନିକ କୌଶଳ ପ୍ରୟୋଗ କରି ଖାଦ୍ୟ ଉତ୍ପାଦନ ବୃଦ୍ଧି କରାଯାଇ, ଅନ୍ୟ ଦେଶରୁ

ଖାଦ୍ୟ ଆମଦାନୀ କରାଯାଉ ଓ ଖାଦ୍ୟ ଶସ୍ୟାଦି ଗଚ୍ଛିତ କରାଯାଉ ମଧ୍ୟ ଖାଦ୍ୟ ଅନାଟନ ଲାଗି ରହିଛି । ତାହାର ଅବଶ୍ୟ କାରଣ ଅନେକ । ସେଗୁଡ଼ିକ ହେଉଛି :

୧) ଜନସଂଖ୍ୟା ଚାପ ଅର୍ଥାତ ଅଧିକ ଜନ୍ମହାର (Pressure of population)
୨) କୃଷି ନିମିତ୍ତ ମୌସୁମୀ ଉପରେ ନିର୍ଭର (Rain fed agriculture)
୩) ଖାଦ୍ୟଶସ୍ୟ ବଣ୍ଟନରେ ଅନିୟମିତତା (Uneven distribution)
୪) ବିଭିନ୍ନ ସ୍ତରରେ ଖାଦ୍ୟଶସ୍ୟର କୃତ୍ରିମ ଅଭାବ (Hoarding)
୫) ଲୋକଙ୍କର ଖାଦ୍ୟାଭ୍ୟାସ (Food eating habit)
୬) ସହରୀକରଣର ଅଗ୍ରଗତି (Urbanisation)
୭) ଖାଦ୍ୟଶସ୍ୟ ପାଇଁ ଚାହିଦାର ସ୍ଥିତିସ୍ଥାପକତା (Income elasticity of Demand for foodgrains)
୮) ଅଧିକ ବିକାଶ ମୂଳକ ଖର୍ଚ୍ଚ (Huge Developmental Expenditure)
୯) ଦରଦାମରେ ଅସ୍ଥିରତା (Speculative Trade in Foodgrains)
୧୦) ଗୋମହିଷାଦି ପ୍ରାଣୀଙ୍କ ଖାଦ୍ୟ ଚାହିଦା (Demand for cattle feed)

## ଖାଦ୍ୟ ସମସ୍ୟା ସମାଧାନ

ଉପରୋକ୍ତ କାରଣଗୁଡ଼ିକୁ ଅନୁଧ୍ୟାନ କଲେ ଧାରଣା ହେବ ଯେ ଏ ସମସ୍ୟା ଏକ ଜଟିଳ ରୋଗ; ଆରୋଗ୍ୟର ଆଶୁ ସୂଚନା ଅସମ୍ଭବ । ତେବେ ଏହା କହି ଚୁପ୍‌ଚାପ୍ ରହିଗଲେ ହେବ ନାହିଁ । କିଛି ନା କିଛି ପଦକ୍ଷେପ ନେଇ ସମସ୍ୟା ଆମର ଆମେ ହିଁ ସମାଧାନ କରିବାକୁ ଚେଷ୍ଟିତ ହେବା । ସେଥିପାଇଁ ପ୍ରଥମ ପଦକ୍ଷେପ ହେଉଛି କୃଷି ଉତ୍ପାଦନ ଉପରେ ଗୁରୁତ୍ୱ ଆରୋପ କରି ସଘନ ଚାଷ (Intensive cultivation) ନିମିତ୍ତ ଧ୍ୟାନ ଦେବା । କୃଷକମାନଙ୍କୁ ଆଧୁନିକ କୃଷିପ୍ରଣାଳୀ ଉପରେ ସଚେତନ କରାଇ ଅଧିକ ଅମଳ ଉପରେ ଅବଗତ କରାଇବା । କୃଷିକ୍ଷେତ୍ର, ଜଳସେଚନ, ଯନ୍ତ୍ରକୌଶଳ, ବୈଷୟିକ କୌଶଳ, ଉନ୍ନତ କିସମର ବିହନ ତଥା ଜୈବିକ ସାର ଆଦିର ପ୍ରୟୋଗ ପ୍ରତି ଉପଯୁକ୍ତ ନଜର ଦେଲେ କୃଷି ଉତ୍ପାଦନର ନିଶ୍ଚିତ ସଂପ୍ରସାରଣ ହେବ, ଏଥିରେ ସନ୍ଦେହ ନାହିଁ । କୃଷି ଉତ୍ପାଦନ ବୃଦ୍ଧି ଘଟିଲେ ଖାଦ୍ୟାଭାବ ଦୂରୀଭୂତ ହେବ ନିଶ୍ଚୟ ।

ଉତ୍ପାଦନ ବୃଦ୍ଧି ସହ ଖାଦ୍ୟ ଶସ୍ୟର ବଣ୍ଟନ ପ୍ରତି ଗୁରୁତ୍ୱ ଦିଆଯିବା ଉଚିତ । ଆମ ଦେଶରେ ଖାଦ୍ୟଉତ୍ପାଦନ ଠିକ୍ ରହି ମଧ୍ୟ ସମସ୍ତେ ଖାଦ୍ୟ ନପାଇବାର କାରଣ ବିଷମ ବଣ୍ଟନ । ଏଥି ସହ ଖାଦ୍ୟଶସ୍ୟର ଦରମଧ୍ୟ ସଠିକ୍ ରହିବା ଉଚିତ୍ । ଦରଦାମର ତାରତମ୍ୟ ରହିଲେ ବା ମଝିରେ ମଝିରେ ବଢ଼ିଲେ ଖାଉଟୀମାନେ ଅସୁବିଧାର ସମ୍ମୁଖୀନ ହେବେ ଓ କ୍ରୟ କରିବାରେ ଅସୁବିଧା ହେବ । ତେଣୁ ସମସ୍ତେ ଖାଇପାରିବେ ବା କିପରି ? ଏସବୁ ପ୍ରତି ସାବଧାନ ହୋଇ ପୁଣି ଖାଦ୍ୟାଭାବ ପଡୁଛି । ତାର ମୂଳକାରଣ ଜନବିସ୍ଫୋରଣ । ଜନସଂଖ୍ୟାର ଦ୍ରୁତପ୍ରସାର ଆମଦେଶକୁ ଧ୍ୱଂସାଭିମୁଖୀ କରିନେଉଛି । ଜନସଂଖ୍ୟା ସ୍ଥିର ନ ରହିଲେ ଯେତେପ୍ରକାର କାର୍ଯ୍ୟକ୍ରମ କଲେ ତାହା ବିଫଳ ହେବ । ଏଥିପ୍ରତି ସରକାରଙ୍କ ସହ ଆମେ ସମସ୍ତେ ସଚେତନ ହେବା ବାଞ୍ଛନୀୟ ।

## ସବୁଜ ବିପ୍ଳବ

ଉଚ୍ଚ ଅମଳକ୍ଷମ ବିଭିନ୍ନ ପ୍ରକାର ବିହନ ଓ ରାସାୟନିକ ସାରର ପ୍ରୟୋଗ ଦ୍ୱାରା ୬୦ ଦଶକର ମଧ୍ୟଭାଗରେ ଆମ ଦେଶରେ କୃଷି ଉତ୍ପାଦନରେ ଯେଉଁ ବିପୁଳ ବୃଦ୍ଧି ଘଟିଲା, ତାହା ''ସବୁଜ ବିପ୍ଳବ'' ନାମରେ ନାମିତ । ନୂତନ ଗବେଷଣା ପ୍ରସୂତ ବିଭିନ୍ନ ପ୍ରକାର ବିହନ, ନୂତନ ପ୍ରକାର କୃଷିନିବେଶ ଏବଂ ସେଗୁଡ଼ିକର ନୂତନ ସମ୍ମିଶ୍ରଣରେ ନୂତନ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ଫଳରେ ଭାରତୀୟ କୃଷି ଆଉ ବିଶେଷ ଭାବେ ପ୍ରକୃତି ନିୟନ୍ତ୍ରିତ ପୂର୍ବର ପାରମ୍ପରିକ କୃଷି ହୋଇରହିଲା ନାହିଁ । ଏହା ହଠାତ୍ ଘଟିଲା । ଅତି ଶୀଘ୍ର ପ୍ରସାର ଲାଭ କଲା ଏବଂ ଅତି କମ୍ ସମୟରେ ଚମତ୍କାର ଫଳ ପ୍ରଦାନ କଲା । ତେଣୁ ଏହା କୃଷିରେ ବିପ୍ଳବର ଆଖ୍ୟା ଅର୍ଜନ କଲା । ଏହି ସବୁଜ ବିପ୍ଳବ ଯୋଗୁଁ ଯେଉଁ ସବୁ ପ୍ରଭାବ ଅନୁଭୂତ ହେଲା ତାହା ହେଉଛି:

୧) ଉତ୍ପାଦନ ବୃଦ୍ଧି
୨) ଉତ୍ପାଦିତା ବୃଦ୍ଧି
୩) ଆଞ୍ଚଳିକ ବୈଷମ୍ୟ ବୃଦ୍ଧି
୪) କ୍ଷତିକାରକ ଅର୍ଥନୈତିକ ଓ ସାମାଜିକ ପ୍ରଭାବ

୧୯୫୦-୫୧ରୁ ସାତଟି ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହୋଇ ୧୯୯୦ ମାର୍ଚ୍ଚ ୩୧ରେ ସପ୍ତମ ଯୋଜନା ଶେଷ ହେଲା । ପ୍ରତ୍ୟେକ ଯୋଜନାରେ କୃଷି ଅଭିବୃଦ୍ଧି ଉପରେ ଲକ୍ଷ୍ୟ ରହି ଆସୁଛି । ସରକାରଙ୍କ ପ୍ରତ୍ୟେକ ପଦକ୍ଷେପ ପ୍ରଶଂସନୀୟ । ଖାଦ୍ୟାଭାବ ମେଣ୍ଟାଇବା, ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରି ସମସ୍ତଙ୍କ ପାଖରେ ପହଁଚାଇବା ଲକ୍ଷ୍ୟ ହୋଇ ମଧ୍ୟ ସଂପୂର୍ଣ୍ଣ ସଫଳତା ନିର୍ଭର କରୁଛି ଆମ ସମସ୍ତଙ୍କ ଉପରେ । ଏହି ଉଦ୍ଦେଶ୍ୟରେ ପ୍ରତ୍ୟେକବର୍ଷ ଅକ୍ଟୋବର ମାସ ୧୬ ତାରିଖକୁ ''ବିଶ୍ୱଖାଦ୍ୟ ଦିବସ''(World Food day) ଭାବରେ ପାଳନ କରାଯାଉଛି । ଆମେ ସମସ୍ତେ ମିଳିମିଶି ଏହି ବିରାଟ ସମସ୍ୟା ସମାଧାନ ଦିଗରେ ଚେଷ୍ଟିତ ହେଲେ ଆମ ଦେଶ ସତରେ ଏକ ବିକାଶଶୀଳ ଦେଶ ଭାବରେ ପରିଗଣିତ ହେବ । ଆମେ ସରକାରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତକରି ଚୁପ୍ ଚାପ୍ ବସିପଡ଼ିଲେ ଏ ସମସ୍ୟା କିପରି ସମାଧାନ ହେବ ?

---

ସ୍ନାତକୋତ୍ତର ପ୍ରାଣିବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

# ଗାନ୍ଧିଜୀଙ୍କ ପବିତ୍ର ଚିତାଭସ୍ମ ବିସର୍ଜନ

ଶ୍ରୀ ସୌମିତ୍ର କୁମାର ଚାଟାର୍ଜୀ



କଟକ ଷ୍ଟେଟ ବ୍ୟାଙ୍କର ମୁଖ୍ୟ କାର୍ଯ୍ୟାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଗାନ୍ଧୀ ଚିତାଭସ୍ମ ପ୍ରତି ଶ୍ରଦ୍ଧାଞ୍ଜଳୀ ଜଣାଉଛନ୍ତି

୧୯୯୭ ମସିହା ଜାନୁଆରୀ ୩୦ "ମହାତ୍ମା ଗାନ୍ଧୀ ଅମର ରହେ", "ରଘୁପତି ରାଘବ ରାଜାରାମ", ପର୍ବତ ବେଦଧ୍ୱନି ଆଦିରେ ସମଗ୍ର ଆଲାହାବାଦ ସହର ମୁଖରିତ । ଦୀର୍ଘ ୪୭ ବର୍ଷ ଧରି ଲୋକଲୋଚନର ଅନ୍ତରାଳରେ କଟକସ୍ଥିତ ଷ୍ଟେଟବ୍ୟାଙ୍କ ମୁଖ୍ୟ ଶାଖାର ନିବୁଜ କୋଠରୀରେ ପଡ଼ିରହିଥିବା ମହାତ୍ମାଗାନ୍ଧୀଙ୍କର ଚିତାଭସ୍ମର ବିସର୍ଜନ ପାଇଁ ଜନଗଣଙ୍କ ମଧ୍ୟରେ ଅପୂର୍ବ ଉନ୍ମାଦନା, ଅସୀମ ଆନନ୍ଦ । ଏକ ପୁଷ୍ପ ସଜ୍ଜିତ ଟ୍ରକରେ ମହାତ୍ମାଙ୍କର ଚିତାଭସ୍ମ ରଖାଯାଇଥିବା କଳସଟିକୁ ସଂଗମ ସ୍ଥଳକୁ ନିଆଯାଇଥିଲା ଏକ ବିରାଟ ଶୋଭାଯାତ୍ରାରେ । ଶେଷରେ ତାଙ୍କର ୪୯ତମ ମୃତ୍ୟୁ ବାର୍ଷିକୀରେ ପବିତ୍ର ତ୍ରିବେଣୀ ସଂଗମରେ ରାଷ୍ଟ୍ରୀୟ ମର୍ଯ୍ୟାଦାର ସହ ବିସର୍ଜନ କରାଯାଇଥିଲା ତାଙ୍କର ଚିତାଭସ୍ମ ଓ ଅସ୍ଥିକୁ । ଏହାକୁ ବିସର୍ଜନ କରିଥିଲେ ମହାତ୍ମାଙ୍କର ଅଣନାତି ତୁଷାର ଗାନ୍ଧୀ ଏବଂ ପୁରୋହିତ ଥିଲେ ସନ୍ତୋଷ କୁମାର ପାଣ୍ଡେ ।

୧୯୪୮ ମସିହା ଫେବୃୟାରୀ ୧୨ ତାରିଖରେ ଏବଂ ୧୯୫୦ ମସିହାରେ ତାଙ୍କର ଭସ୍ମ ଓ ଅସ୍ଥି ବିସର୍ଜିତ ହୋଇଥିଲା । ଏହି ବିସର୍ଜନ ଉତ୍ସବରେ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ ପ୍ରମୁଖ ନେତାମାନଙ୍କ ଉପସ୍ଥିତିରେ ଗାନ୍ଧିଜୀଙ୍କ ପୁତ୍ର ରାମଦାସ ଗାନ୍ଧୀ ମହାତ୍ମାଙ୍କର ଅସ୍ଥି କଳସ ସଂଗମରେ ବିସର୍ଜନ କରିଥିଲେ । ଏଥିରେ ପୌରହିତ୍ୟ କରିଥିଲେ ଗାନ୍ଧୀ ପରିବାରର ତତ୍କାଳୀନ ପୁରୋହିତ ତଥା ସନ୍ତୋଷ କୁମାର ପାଣ୍ଡେଙ୍କର ପିତା ସ୍ୱର୍ଗତ କାମତା ପ୍ରସାଦ ପାଣ୍ଡେ । ୧୯୫୦ ମସିହା ନଭେମ୍ବର ୨୯ ତାରିଖରେ ଏକ କଳସରେ ମହାତ୍ମାଙ୍କ ଚିତାଭସ୍ମ ଓ ଅସ୍ଥି କଟକସ୍ଥିତ ବର୍ତ୍ତମାନର ଷ୍ଟେଟବ୍ୟାଙ୍କର ମୁଖ୍ୟ ଶାଖାରେ (ତତକାଳୀନ ଇମ୍ପେରିଆଲ ବ୍ୟାଙ୍କ) ଏକ କାଠ ବାକ୍ସରେ ଜଜମୁଦ ହୋଇ ଓଡ଼ିଶା ସରକାରଙ୍କର ତତ୍କାଳୀନ ପ୍ରଧାନ ସଚିବଙ୍କ ଦ୍ୱାରା ରଖାଯାଇଥିଲା । ଏହି ଘଟଣା ସମୟ କ୍ରମେ ସମଗ୍ର ଓଡ଼ିଶାବାସୀ ତଥା ଭାରତବାସୀଙ୍କର ମାନସପଟରୁ ବିସ୍ମୃତ ପ୍ରାୟ ହୋଇ ଯାଉଥିବା ବେଳେ ଦୀର୍ଘ ୪୪ ବର୍ଷ ପରେ ୧୯୯୪ ମସିହା ଅକ୍ଟୋବର ୩ ତାରିଖରେ ଏହି ସମ୍ବାଦକୁ ଲୋକଲୋଚନକୁ ଆଣି ସମଗ୍ର ଭାରତରେ ଚମକ ସୃଷ୍ଟି କରିଥିଲେ ବରିଷ୍ଠ ସାମ୍ବାଦିକ ତଥା ଫଟୋଗ୍ରାଫର ଶ୍ରୀଦେବୁ ଚାଟାର୍ଜୀ । ପରେ ବ୍ୟାଙ୍କର ସମସ୍ତ ରେକର୍ଡ଼ପତ୍ର ଯାଞ୍ଚ, ସୁପ୍ରିମ କୋର୍ଟର ରାୟପରେ ସମସ୍ତ ସନ୍ଦେହର ଅବସାନ ଘଟିଥିଲା । ୧୯୯୭ ଜାନୁଆରୀ ୧୩ ରେ ତୁଷାର ଗାନ୍ଧୀ ଆସିଥିଲେ କଟକ, ମହାତ୍ମାଙ୍କ ଚିତାଭସ୍ମକୁ ନେଇଯିବା ପାଇଁ । ବ୍ୟାଙ୍କର ବ୍ରାଞ୍ଚ ମ୍ୟାନେଜର ଶ୍ରୀ ଉଦୟ ଶଙ୍କର ରାୟ ଓଡ଼ିଶା ହାଇକୋର୍ଟର ରେଜିଷ୍ଟ୍ରାର ଶ୍ରୀ ଏ.କେ. ପରିଡ଼ା ଏବଂ ତୁଷାର ଗାନ୍ଧୀଙ୍କ ଉପସ୍ଥିତିରେ ଏହି ବାକ୍ସଟିକୁ ଖୋଲାଯାଇଥିଲା ଓ ଜାନୁଆରୀ ୧୪ ତାରିଖରେ ଏହି ତିନିଜଣ ଏକ ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ ।

ଦୀର୍ଘ ଏତେ ବର୍ଷପରେ ମହାତ୍ମାଜୀଙ୍କର ଏହି ଚିତାଭସ୍ମ ପ୍ରସଙ୍ଗ ପ୍ରଥମେ ଲୋକଲୋଚନକୁ ଆଣିଥିବାରୁ ସାମ୍ବାଦିକ ଶ୍ରୀ ଚାଟାର୍ଜୀଙ୍କୁ ତୁଷାର ଗାନ୍ଧୀ ଜାନୁଆରୀ ୨୫ ତାରିଖରେ ଏକ ବିଶେଷ ଉତ୍ସବରେ ସମ୍ବର୍ଦ୍ଧିତ କରିଥିଲେ ।



ଗାନ୍ଧୀ ଚିତାଭସ୍ମ ସହ ଶ୍ରୀ ତୁଷାର ଅରୁଣ ଗାନ୍ଧୀ



ମହାତ୍ମା ଗାନ୍ଧୀଙ୍କ ପବିତ୍ର ଚିତାଭସ୍ମକୁ ସର୍ବପ୍ରଥମେ ଲୋକଲୋଚନକୁ ଆଣିଥିବାରୁ ସାମ୍ବାଦିକ ଶ୍ରୀ ବେଙ୍କୁ ଭାର୍ଗବାଙ୍କୁ ଶ୍ରୀ ତୁଷାର ଅରୁଣ ଗାନ୍ଧୀ ସମ୍ବର୍ଦ୍ଧନା କରୁଛନ୍ତି

ଜାନୁଆରୀ ୨୮ ତାରିଖରେ କଟକର ଷ୍ଟେଟବ୍ୟାଙ୍କରୁ ଗାନ୍ଧିଜୀଙ୍କ ଚିତାଭସ୍ମ ଆସିଥିଲା । ସର୍ବସାଧାରଣଙ୍କର ଦର୍ଶନ ନିମନ୍ତେ । ତୁଷାର ଗାନ୍ଧୀ ଏହି ବାକ୍ସଟିକୁ ମୁଣ୍ଡରେ ଧରି ସେତେବେଳେ ବ୍ୟାଙ୍କରୁ ବାହାରି ଆସିଥିଲେ ଗାନ୍ଧିଜୀଙ୍କ ଜୟଧ୍ୱନିରେ ସେ ଅଞ୍ଚଳ ମୁଖରିତ ହୋଇଉଠିଥିଲା ।

ବାକ୍ସଟିକୁ ଏକ ସୁସଜ୍ଜିତ ଟ୍ରକରେ ରଖାଯାଇ କଟକ ସହରର ଜନସାଧାରଣଙ୍କ ଦର୍ଶନ ନିମନ୍ତେ ଏକ ଶୋଭାଯାତ୍ରାରେ ନିଆଯାଇଥିଲା । ଏହି ଚିତାଭସ୍ମକୁ

ସମ୍ମାନ ଜଣାଇବାକୁ ଆସିଥିବା ପ୍ରମୁଖ ବ୍ୟକ୍ତିମାନଙ୍କ ମଧ୍ୟରେ ସେଦିନ ଉପସ୍ଥିତ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସମେତ ବହୁ ମନ୍ତ୍ରୀ, ରାଜନୈତିକ ବ୍ୟକ୍ତି, ଗାନ୍ଧୀବାଦୀ ନେତା, ସ୍ୱାଧୀନତା ସଂଗ୍ରାମୀ ଯୁବଗୋଷ୍ଠୀ ଓ କଟକ ସହରବାସୀ ।

୨୮ ତାରିଖ ରାତି ୧୦ଟା ୫୦ । ସମଗ୍ର କଟକ ଷ୍ଟେସନ୍ ଲୋକାରଣ୍ୟ । ଗାନ୍ଧିଜୀଙ୍କର ଚିତାଭସ୍ମକୁ ଆବାଳ ବୃଦ୍ଧବନିତା ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ମହାତ୍ମାଙ୍କର ପ୍ରିୟଭଜନ, ବେଦଧ୍ୱନି ଓ ଗାନ୍ଧିଜୀଙ୍କର ଜୟ ଜୟକାର ସହିତ । ଦିଲ୍ଲୀଗାମୀ ପୁରୁଷୋତ୍ତମ ଏକ୍ସପ୍ରେସ୍‌ର ଏକ ସୁସଜ୍ଜିତ ଦ୍ୱିତୀୟ ଶ୍ରେଣୀର ବଗିର ମଧ୍ୟ ଭାଗରେ ଚିତାଭସ୍ମକୁ ସ୍ଥାପନ କରାଯାଇଥିଲା ସର୍ବସାଧାରଣଙ୍କ ଦର୍ଶନ ନିମନ୍ତେ । ଏହି ବଗିରେ ମହାତ୍ମାଙ୍କ ଚିତାଭସ୍ମ ନେଇ ସଂଗମ ଅଭିମୁଖେ ଯାତ୍ରା କରିଥିଲେ ମହାତ୍ମାଙ୍କ ଅଣନାତି ଶ୍ରୀ ତୁଷାର ଗାନ୍ଧୀ ଓ ତାଙ୍କର ଦୁଇ ଆତ୍ମୀୟ, ଓଡ଼ିଶା ହାଇକୋର୍ଟର ରେଜିଷ୍ଟ୍ରାର ଶ୍ରୀ ଏ.କେ. ପରିଚ୍ଛା, କଟକ ଷ୍ଟେଟବ୍ୟାଙ୍କର ଜେନେରାଲ ମ୍ୟାନେଜର ଶ୍ରୀ ୟୁ.ଏସ. ରାଓ, ଓଡ଼ିଶା ସରକାରଙ୍କ ପକ୍ଷରୁ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ, ପ୍ରଦେଶ କଂଗ୍ରେସର ମୁଖପାତ୍ର ଶ୍ରୀ ବୈଷ୍ଣବ ପରିଡ଼ା, ଗାନ୍ଧୀ ସ୍ମାରକନିଧିର ସଂପାଦକ ଶ୍ରୀ ପ୍ରହ୍ଲାଦ ସିଂହ, ପ୍ରଖ୍ୟାତ ଗାନ୍ଧୀବାଦୀ ତଥା ଭାରତ ଏକତା ଆନ୍ଦୋଳନର ନେତା ଶ୍ରୀ ଏସ୍.ଏନ୍. ସୁବାରାଓ, ବାପୁ ସ୍ମାରକ ସମିତିର ଶ୍ରୀ ନକୁଳ ଚରଣ ଓଝା, ଦେଶ ବିଦେଶର ବହୁ ସାମ୍ବାଦିକ, କ୍ୟାମେରାମ୍ୟାନ୍ ଏବଂ ନିରାପତ୍ତା ଦାୟିତ୍ୱରେ ଥିବା ଜମାଦାରମାନେ ।

ଜାନୁଆରୀ ୩୦ ତାରିଖ ଯଥାରୀତି କ୍ରିୟାକର୍ମ ସମ୍ପାଦନ ପରେ ତୁଷାର ଗାନ୍ଧୀ ଓ ତାଙ୍କ ପରିବାରର ସଦସ୍ୟମାନେ ଗଙ୍ଗା, ଯମୁନା ଓ ସରସ୍ୱତୀର ମିଳନ ସ୍ଥଳ ତ୍ରିବେଣୀ ସଂଗମରେ ବିସର୍ଜନ କରିଥିଲେ ମହାତ୍ମାଙ୍କର ଶେଷ ଚିତାଭସ୍ମକୁ । ସ୍ୱଚ୍ଛ ନୀଳ ଜଳରାଶିରେ ଚିରଦିନ ପାଇଁ ମିଶିଗଲା ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଦଗ୍ଧ ଶରୀରର ଶେଷ ସ୍ମୃତିଚିହ୍ନ ଟିକକ ।

ଚଣ୍ଡୀ କୁମାର,
ଶେଖବଜାର (ଗଉଡ଼ ସାହି)
କଟକ - ୭୫୩ ୦୦୮

# ପେନ୍‌ସନ୍ ଅଦାଳତ

**ସୋମନାଥ ଜେନା**

ସରକାରୀ କର୍ମଚାରୀମାନେ ଅବସର ଗ୍ରହଣ କଲେ ସେମାନଙ୍କର ଭବିଷ୍ୟନିଧି ପାଣ୍ଠିରେ ଗଚ୍ଛିତ ଥିବା ପୁରା ଟଙ୍କା ଉଠାନ୍ତି । ତାହାଛଡ଼ା ଯଦି ସେମାନେ ଚାକିରିକାଳ ମଧ୍ୟରେ ମୃତ୍ୟୁ ବରଣ କରନ୍ତି ତାଙ୍କର ପରିବାରମାନେ ଗ୍ରାଚ୍ୟୁଇଟି ପାଇଥାନ୍ତି । ଯେଉଁ କର୍ମଚାରୀମାନେ ଜୀବିତ ଅବସ୍ଥାରେ ଅବସର ଗ୍ରହଣ କରିଥାନ୍ତି ସେମାନେ ଚାକିରିକାଳ ହିସାବକୁ ନେଇ ଗ୍ରାଚ୍ୟୁଇଟି ଓ ପେନ୍‌ସନ୍ ପାଇଥାନ୍ତି । ମୃତ୍ୟୁପରେ ପାରିବାରିକ ପେନ୍‌ସନ୍ ଦେବାର ବ୍ୟବସ୍ଥା ଅଛି । ଅବସର ନେବା ପୂର୍ବରୁ ଚାକିରିକାଳ ମଧ୍ୟରେ ଗଚ୍ଛିତ ଥିବା ଅର୍ଜିତ ୨୪୦ ଦିନ ଛୁଟି ବଦଳରେ ଟଙ୍କା ପାଇଥାନ୍ତି । ଏହା ଛଡ଼ା, କୌଣସି ସରକାରୀ କର୍ମଚାରୀ ଚାକିରି କାଳ ଭିତରେ ମରିଗଲେ ତାଙ୍କ ପରିବାରର ଅବସ୍ଥା ଅତି ଦୁର୍ଦ୍ଦଶାଗ୍ରସ୍ତ ଥାଆନ୍ତି ସେମାନଙ୍କର ବଞ୍ଚିବା ନିମନ୍ତେ ପରିବାରର ଜଣେ ଯୋଗ୍ୟ ବ୍ୟକ୍ତିଙ୍କୁ ୩ୟ ଶ୍ରେଣୀ/୪ର୍ଥ ଶ୍ରେଣୀ ଚାକିରିରେ ଭର୍ତ୍ତି କରିବାର ସୁବିଧା ରହିଛି ।

ପେନ୍‌ସନ୍ ଏକ ଦାନ ନୁହେଁ । ଏହା କାହାର ଅନୁକମ୍ପା ଉପରେ ନିର୍ଭର କରେ ନାହିଁ । ଏହା ଏକ ଦାବୀ । ଏହା ସମ୍ପତ୍ତିଗତ ଅଧିକାର । ଏହି ମର୍ମରେ ବିଭିନ୍ନ ଅଦାଲତମାନେ ରାୟ ଦେଇଛନ୍ତି ।

ଅବସର ପୂର୍ବରୁ ସରକାରୀ କର୍ମଚାରୀମାନେ ସକ୍ରିୟଭାବେ ସଂପୃକ୍ତ ବିଭାଗରେ କାର୍ଯ୍ୟ କରିଥାନ୍ତି । ମାତ୍ର, ଚାକିରିରୁ ଗଲାପରେ/ମୃତ୍ୟୁ ପରେ ତାଙ୍କର ପ୍ରାପ୍ୟ ପେନ୍‌ସନ୍, ଗ୍ରାଚ୍ୟୁଇଟି ଓ ଅବସର କାଳୀନ ଅନ୍ୟାନ୍ୟ ସୁବିଧା ପ୍ରଦାନରେ ବିଳମ୍ବ କଲେ ସେମାନେ ଦୁଃଖ ଭୋଗନ୍ତି ଏବଂ ତାଙ୍କର ପରିବାରର ସଦସ୍ୟମାନେ ଅଶେଷ ଦୁଃଖ ଭୋଗନ୍ତି । ବାର୍ଦ୍ଧକ୍ୟ ଜନିତ ଚିକିତ୍ସା, ରୋଗର ଚିକିତ୍ସା, ସାମାଜିକ ଦାୟିତ୍ୱ, ପିଲାମାନଙ୍କ ପାଠ ପଢ଼ା ବିବାହ ଓ ଚିକିତ୍ସାର ବ୍ୟାଘାତ ଘଟେ । ତେଣୁ ଏଥି ପ୍ରତି ଖାଲି ପେନ୍‌ସନ୍ ଭୋଗୀମାନେ ଓ ତାଙ୍କ ପରିବାରମାନେ ଯେ ତତ୍ପର ହେବା ଉଚିତ ତାହା ନୁହେଁ, ସାରା ସମାଜ ତଥା ବର୍ତ୍ତମାନ କାମ କରୁଥିବା ସରକାରୀ କଳ ଓ କର୍ମଚାରୀମାନେ ସେମାନଙ୍କ ପ୍ରତି ଆଦର ଓ ସହାନୁଭୂତି ସହ ତାଙ୍କର ପାଉଣା ଦେବା ପାଇଁ ଆପ୍ରାଣ ଚେଷ୍ଟା କରିବା ଉଚିତ୍ । ସେମାନଙ୍କୁ ଆଗଠାରୁ ଅଧିକ ଆଦର କରିବା ଓ ଧୈର୍ଯ୍ୟର ସହିତ ତାଙ୍କର କଥା ଶୁଣିବା ଉଚିତ । ଯେପରିକି ସେମାନଙ୍କର ଆସିବା ଫଳପ୍ରଦ ହେବ ଓ ପାଉଣା ପାଇବେ ସେଥିପାଇଁ ବ୍ୟକ୍ତିଗତ ସୁବିଧା କରିବା ଉଚିତ । ଯଦି ନ କରନ୍ତି, ଅବସର ପରେ ମଧ୍ୟ ସେମାନେ ସେହିଭଳି ଅସୁବିଧା ଭୋଗିବେ । ଯେଉଁ ଗଛର ମଞ୍ଜି ପୋତିଲେ ସେଭଳି ଫଳ ପାଇଲା ଭଳି ଅବସର ଗ୍ରହଣ ପରେ ଅସୁବିଧା ଭୋଗିବାକୁ ବାଧ୍ୟ ହେବେ ।

ହିସାବରୁ ଜଣା ଯାଇଛି ଯେ ୨୧୭୬ ପେନ୍‌ସନ୍ ମାମଲା ମେ ମାସ ସୁଦ୍ଧା ଫଇସଲା ନହୋଇ ବାକି ରହିଛି ବୋଲି ଅଭିଯୋଗ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗକୁ ଆସିଛି । ଏ ଗୁଡ଼ିକର ଫଇସଲା କରିବା ପାଇଁ ସଂପୃକ୍ତ ବିଭାଗକୁ ଲେଖା ଯାଇଛି । ମାସିକ ସମୀକ୍ଷା କରି ବାକିଥିବା ମାମଲାର ଫଇସଲା ନିମନ୍ତେ ଚେଷ୍ଟା କରାଯାଉଛି ।

ପ୍ରତ୍ୟେକ ବିଭାଗରେ ପେନ୍‌ସନ୍ ସମନ୍ୱୟ କମିଟି ମଧ୍ୟ ଗଠିତ ହୋଇଅଛି । ଏମାନେ ପେନ୍‌ସନ୍ ମାମଲାର ସମୀକ୍ଷା କରି ଫଇସଲା କାର୍ଯ୍ୟ ତ୍ୱରାନ୍ୱିତ କରୁଛନ୍ତି । ଏହା ଛଡ଼ା, ଏକ ପେନ୍‌ସନ୍ ଉପଦେଷ୍ଟା କମିଟି ଗଠନ ନିମନ୍ତେ ପ୍ରଚେଷ୍ଟା ଚାଲିଛି । ତଥାପି ଅବସର ପ୍ରାପ୍ତ କର୍ମଚାରୀ ଓ ତାଙ୍କ ପରିବାରମାନେ ପେନ୍‌ସନ୍ ନପାଇ ବାଧ୍ୟ ହୋଇ ନ୍ୟାୟାଳୟ ଓ କନ୍‌ଜ୍ୟୁମର ଫୋରମରେ ଆଶ୍ରୟ ନେଇ କେଶ୍ ଜିତୁଛନ୍ତି । ଏହା ଦ୍ୱାରା ସେମାନେ ଯେ ହଇରାଣ ହେଉଛନ୍ତି ତାହା ନୁହେଁ ସରକାରୀ କଳ ଓ କର୍ମଚାରୀମାନେ ମଧ୍ୟ ଅଦାଲତକୁ ଯାଇ ହଇରାଣ ହେଉଛନ୍ତି ।

ସମସ୍ତେ ଜାଣିଥିବେ ଲୋକ ଅଦାଲତ ଏବେ ଖୁବ୍ ଭଲ କାମ କରୁଛି । ସେହିପରି ଏକ ପେନ୍‌ସନ୍ ଅଦାଲତ ୨୮-୮-୧୯୮୯ ତାରିଖରୁ ଓଡ଼ିଶାରେ କାର୍ଯ୍ୟକାରୀ କରାଯାଉଛି । ସେତେବେଳେ

ଏହା ଅର୍ଥ ବିଭାଗ ଦ୍ୱାରା ପରିଚାଳିତ ହେଉଥିଲା । ୧୯୯୦ ମସିହା ମାର୍ଚ୍ଚ ମାସରେ ଓଡ଼ିଶା ସରକାର ଏକ ପ୍ରସ୍ତାବ ଦ୍ୱାରା ସ୍ୱତନ୍ତ୍ର ଭାବରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗ ଗଠନ କଲେ ଓ ତାହାର କାର୍ଯ୍ୟାବଳୀ ମଧ୍ୟ ନିର୍ଦ୍ଦିଷ୍ଟ କଲେ । ଅନ୍ୟାନ୍ୟ ଅଭିଯୋଗ ସହିତ ପେନ୍‌ସନ୍ ସଂକ୍ରାନ୍ତ ଅଭିଯୋଗ ଗୁଡ଼ିକର ବିଚାର ବିଶେଷ ଭାବେ ତ୍ୱରାନ୍ୱିତ କରିବା ଏହି ବିଭାଗର ଦାୟିତ୍ୱ । ଏହି ବିଭାଗର ଦାୟିତ୍ୱ ଜଣେ ମନ୍ତ୍ରୀ, ଜଣେ କମିଶନର–ତଥା–ଶାସନ ସଚିବଙ୍କ ଦ୍ୱାରା ପରିଚାଳିତ ହୁଏ । ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ନିର୍ଦ୍ଦେଶକ–ତଥା–ସ୍ୱତନ୍ତ୍ର ଶାସନ ସଚିବ ଓ ଅନୁଶାସନ ସଚିବ ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ରହିଛନ୍ତି ।

ଏହି ବିଭାଗ ଦ୍ୱାରା ବର୍ତ୍ତମାନ ପେନ୍‌ସନ୍ ଅଦାଲତ ଚାଲୁଛି । ସେହି ପେନ୍‌ସନ୍ ଅଦାଲତର ସଭାପତି ହେଉଛନ୍ତି ଉପ ମୁଖ୍ୟମନ୍ତ୍ରୀ ତଥା ଏହି ବିଭାଗର ମନ୍ତ୍ରୀ । ଦ୍ୱିତୀୟ ସଭ୍ୟ ହେଲେ କମିଶନର–ତଥା–ଶାସନ ସଚିବ । ତୃତୀୟ ସଭ୍ୟ – ଉପଶାସନ ସଚିବ, ଅର୍ଥ ବିଭାଗ, ଚତୁର୍ଥ ସଭ୍ୟ–ମହା ହିସାବ ରକ୍ଷକ, ଓଡ଼ିଶା, ପଞ୍ଚମ ସଭ୍ୟ–କଣ୍ଟ୍ରୋଲର ଅଫ୍ ଆକାଉଣ୍ଟସ୍ । ଏ ସବୁ ବିଷୟ ପରିଚାଳନା କରିବାରେ ନିର୍ଦ୍ଦେଶକ–ତଥା–ସ୍ୱତନ୍ତ୍ର ଶାସନ ସଚିବ ସାହାଯ୍ୟ କରନ୍ତି ।

ଏଥି ମଧ୍ୟରେ ୬୬ଟି ପେନ୍‌ସନ୍ ଅଦାଲତ ହୋଇ ଯାଇଅଛି । ସେଥିରେ ସର୍ବମୋଟ ୫୫୮୭ଟି ମାମଲା ବିଚାର କରାଯାଇଥିଲା । ସେଥିରୁ ୩୦୫୧ଟି ଚୂଡ଼ାନ୍ତ ଫଇସଲା ହୋଇଛି ଏବଂ ୨୫୩୬ଟି ବିଭିନ୍ନ ତ୍ରୁଟି ନିବାରଣ ନିମନ୍ତେ ସମ୍ପୃକ୍ତ ବିଭାଗକୁ ପୁନଶ୍ଚ ପଠାଯାଇଛି । ଏହା ପ୍ରତି ଜିଲ୍ଲାସ୍ଥିତ ଥିବା ପେନ୍‌ସନ୍ ମଞ୍ଜୁରୀ ଅଧିକାରୀଙ୍କଠାରେ ବାକି ପଡ଼ିଥିବା ମାମଲାଗୁଡ଼ିକର ସଂଖ୍ୟା ଦେଖି ଅଦାଲତର ଅଧିବେଶନ ସେହିଠାରେ କରିବାର ସ୍ଥିର କରାଯାଏ । ପ୍ରାୟ ୧ ମାସ ପୂର୍ବରୁ ମହା ହିସାବ ରକ୍ଷକ ଓ କଣ୍ଟ୍ରୋଲର ଅଫ୍ ଆକାଉଣ୍ଟସ୍ ନିକଟରୁ ବାକିଥିବା ମାମଲାଗୁଡ଼ିକର ତାଲିକା ଅଣାଯାଏ । ତାହା ଛଡ଼ା, ଏହି ବିଭାଗରେ ପଡ଼ିଥିବା ପେନ୍‌ସନ୍ ସମ୍ପର୍କୀୟ ଅଭିଯୋଗ ତନଖି କରି ବିଚାର ନିମନ୍ତେ ସ୍ଥିର ହୁଏ । ପେନ୍‌ସନ୍ ଅଦାଲତରେ ପ୍ରାୟ ୧୦ ଦିନ ପୂର୍ବରୁ ଏକ ନିର୍ଦ୍ଦିଷ୍ଟ ଦିନ ଓ ସ୍ଥାନ ସେହି ଜିଲ୍ଲାର ବୈଠକ ପାଇଁ ସ୍ଥିର କରାଯାଏ । ଏହାକୁ ଅଦାଲତ ପୂର୍ବରୁ ଯାଞ୍ଚ ମିଟିଙ୍ଗ୍ କୁହାଯାଏ । ଏଥିରେ ପେନ୍‌ସନ୍ ବିଭାଗର ଅଫିସର, କର୍ମଚାରୀ, ପେନ୍‌ସନ୍ ମଞ୍ଜୁରୀ ଅଧିକାରୀ ଓ ତାଙ୍କର କର୍ମଚାରୀ, ମହା ହିସାବ ରକ୍ଷକ, କଣ୍ଟ୍ରୋଲର ଅଫ୍ ଆକାଉଣ୍ଟସ୍‌ର ଅଫିସର ଓ କର୍ମଚାରୀମାନେ ଯାଇ ବକେୟା ଥିବା ମାମଲାଗୁଡ଼ିକର ଯାଞ୍ଚ କରନ୍ତି । ବାକିଥିଲେ ଆପୋଷ ସମାଧାନ ମାଧ୍ୟମରେ ତ୍ରୁଟି ସଂଶୋଧନ କରାଇ ମଞ୍ଜୁରୀ ସ୍ଥଳକୁ ଆଣନ୍ତି । ଯଦି ନହୁଏ ତାହାହେଲେ ୭/୮ ଦିନ ସମୟ ନେଇ କାଗଜାତ ପ୍ରସ୍ତୁତ କରି ସମ୍ପୃକ୍ତ ବିଭାଗ, ମହା ହିସାବ ରକ୍ଷକ, କଣ୍ଟ୍ରୋଲର ଅଫ୍ ଆକାଉଣ୍ଟସ୍ ସହିତ ସମ୍ପର୍କ ରଖିବାକୁ କୁହାଯାଏ ଓ ବ୍ୟକ୍ତିଗତ ଭାବେ ଲୋକ ପଠାଇ ତ୍ରୁଟି ସଂଶୋଧନ କରିବାକୁ ନିର୍ଦ୍ଦେଶ ଦିଆଯାଏ । ଫଳରେ ଆବେଦନ ମାମଲାରେ ଥିବା ତ୍ରୁଟି ଏହି ସମୟରେ ସଂଶୋଧନ ହୋଇଥାଏ । ନିର୍ଦ୍ଦିଷ୍ଟ ଦିନ ଓ ସ୍ଥାନରେ ପେନ୍‌ସନ୍ ଅଦାଲତ ବସେ । ଏହା ବସିବା ପୂର୍ବରୁ ଦୂରଦର୍ଶନ, ଆକାଶବାଣୀ, ସମ୍ବାଦ ପତ୍ର ଓ ଜିଲ୍ଲାର ବିଭିନ୍ନ ଦପ୍ତରକୁ ଚିଠି ଓ ବିଜ୍ଞାପନ ଦ୍ୱାରା ନିର୍ଦ୍ଦିଷ୍ଟ ସ୍ଥାନ ସମୟ ଓ ତାରିଖ ଜଣାଇ ଦିଆଯାଏ ।

ପେନ୍‌ସନ୍‌ଭୋଗୀମାନେ ଓ ତାଙ୍କର ପରିବାରର ଲୋକମାନେ/ଆବେଦନକାରୀ ସେହି ଅଦାଲତରେ ମଧ୍ୟ ଉପସ୍ଥିତ ହୁଅନ୍ତି । ସଭାପତିଙ୍କ ଆଦେଶକ୍ରମେ ଅଦାଲତ ଆରମ୍ଭ ହୁଏ । ମାମଲା ଶୁଣାଣି ହୁଏ । ଆପୋଷ ସମାଧାନ ହୁଏ । ପେନ୍‌ସନ୍ ମଞ୍ଜୁରୀର ଘୋଷଣା କରାଯାଏ । ତ୍ରୁଟିଥିଲେ ତାହାର ପରିପାଳନ ପାଇଁ ଅଦାଲତ ସମୟ ଦିଅନ୍ତି ଓ ସେହି ସମୟ ମଧ୍ୟରେ ତ୍ରୁଟି ସଂଶୋଧନ ହୋଇ ପେନ୍‌ସନ୍ ପ୍ରାୟ ମଞ୍ଜୁରୀ ହୋଇଯାଇଥାଏ ।

## ପେନ୍‌ସନ୍ ବିଳମ୍ବର କାରଣ

(୧) ଅବସରପ୍ରାପ୍ତ କର୍ମଚାରୀ ବା ମୃତ କର୍ମଚାରୀର ସଭ୍ୟମାନେ ଠିକ୍ ସମୟରେ କାଗଜ ଦେଉ ନାହାନ୍ତି । ତାହା ଦେବା ଆବଶ୍ୟକ ।

(୨) ଚାକିରୀ କାଳ ମଧ୍ୟରେ ଅଫିସର ମୁଖ୍ୟ ତଥା ପେନ୍‌ସନ୍ ମଞ୍ଜୁରୀ ଅଧିକାରୀମାନେ ଚାକିରୀର ନିୟମିତତା ଓ ସେବା ପୁସ୍ତକର ଅବଧି କରଣ ଅଦ୍ୟାବଧି କରି ନାହାନ୍ତି ।

(୩) କର୍ମଚାରୀମାନେ ଚାକିରୀ କାଳ ମଧ୍ୟରେ ନେଇଥିବା ଅଗ୍ରୀମର ହିସାବ ନିକାଶ କରି ନା'ଦାବୀ ପତ୍ର ଆଣି ନଥାନ୍ତି ।

(୪) ଅବସର ପୂର୍ବରୁ ତାଙ୍କ ବିରୁଦ୍ଧରେ ଥିବା ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ, ଅଡିଟ୍ ରିପୋର୍ଟ, ଭିଜିଲାନ୍ସ କେଶ୍, ସାର୍ଟିଫିକେଟ୍ କେଶ୍ ଫୌଜଦାରୀ ମୋକଦ୍ଦମାର ଫଇସଲା ପାଇଁ ବିଭାଗୀୟ ତଥା ବ୍ୟକ୍ତିଗତ ଚେଷ୍ଟା ହେବା ବିଧେୟ ।

(୫) ସରକାରୀ ବାସଗୃହ ପାଇଥିଲେ ତାହା ଅବସର ପରେ ଠିକ୍ ସମୟରେ ତାହାର ବକେୟା ଦେୟ ଦେଇ ଛାଡ଼ି ଦେବା ଦରକାର ।

(୬) ଭବିଷ୍ୟନିଧି ପାଣ୍ଠିରେ ଥିବା ହିସାବ ଫର୍ଦ୍ଦ, ଟି: ଭି: ନମ୍ବର ପ୍ରତିବର୍ଷ ମେଳ କରି ସଠିକ୍ ହିସାବ ରଖିବା ଦରକାର ।

(୭) ପ୍ରତ୍ୟେକ କର୍ମଚାରୀ ତାଙ୍କ ଦାବୀ ପ୍ରତି ସଚେତନ ହେବା ଦରକାର ଓ କୌଶଳ ପୂର୍ଣ୍ଣ ଭାବରେ କାମ ଆଦାୟ ପାଇଁ ଚେଷ୍ଟା କରିବା ଦରକାର ।

(୮) ବର୍ତ୍ତମାନ ପେନ୍‌ସନ୍ ମଞ୍ଜୁରୀ ଦାୟିତ୍ୱରେ ଥିବା କର୍ମଚାରୀ ତଥା ପଦାଧିକାରୀମାନେ ସମ୍ବେଦନଶୀଳ ଓ ସାହାଯ୍ୟ ମନୋବୃତ୍ତି ନେଇ ପେନ୍‌ସନ୍‌ଭୋଗୀ ଓ ତାଙ୍କ ପରିବାରର ସଦସ୍ୟମାନଙ୍କର କାମ କରିଦେବା ଦରକାର ।

(୯) କମ୍ପ୍ୟୁଟର ମାଧ୍ୟମରେ ଟ୍ରେଜେରୀ, ମହା ହିସାବ ରକ୍ଷକ ଅଫିସ, କଣ୍ଟ୍ରୋଲର ଅଫ୍ ଆକାଉଣ୍ଟସ୍, ଅର୍ଥ ବିଭାଗ, ପ୍ରତ୍ୟେକ ବିଭାଗ ଓ ଦପ୍ତରରେ ହିସାବ ରଖାଯିବା ଦରକାର ।

(୧୦) କମ୍ପ୍ୟୁଟର ମାଧ୍ୟମରେ ପେନ୍‌ସନ୍ ବିଭାଗରେ ପ୍ରତ୍ୟେକ ପେନ୍‌ସନ୍ ମଞ୍ଜୁରୀ ଅଧିକାରୀଙ୍କ ସହିତ ସମ୍ପର୍କ ରଖି ଅବସରକାଳୀନ ପ୍ରାପ୍ୟର ତାଲିକା ପ୍ରସ୍ତୁତ କରିବା, ଫଏସଲା ପାଇଁ ସମୀକ୍ଷା କରିବା ଓ ସ୍ମାରକ ଦେବା ଦରକାର ।

(୧୧) ପେନ୍‌ସନ୍ କେଶ୍ ଫଏସଲା ପାଇଁ ସଚେତନତା ସୃଷ୍ଟି କରିବା, ସ୍ୱତନ୍ତ୍ର ଫଏସଲା ଅଭିଯାନ ହେବା ଦରକାର ।

(୧୨) ଯେଉଁମାନେ ଶୀଘ୍ର ଠିକ୍ ସମୟରେ ଓ ସଠିକ୍ ଭାବରେ ପେନ୍‌ସନ୍ ମାମଲା ଫଏସଲା କରୁଛନ୍ତି ସେମାନଙ୍କୁ ତାରିଫ୍ ପତ୍ର ପଠାଯିବା ଦରକାର ଓ ଯେଉଁମାନେ ବିଳମ୍ବ କରୁଛନ୍ତି, ହଇରାଣ ହରକତ କରୁଛନ୍ତି ସେମାନଙ୍କୁ କଠିନ ଦଣ୍ଡ ଦିଆଯିବା ଦରକାର ।

(୧୩) ପେନ୍‌ସନ୍ ମାମଲା ଫଏସଲା ସମ୍ବନ୍ଧରେ ସଚେତନତା ଶିବିର, କର୍ମଶାଳା ଓ ନିୟମିତ ତାଲିମ ପରିଚାଳନା କରାଯିବା ଦରକାର ।

---

ନିର୍ଦ୍ଦେଶକ-ତଥା-ମୁଖ୍ୟ ଶାସନ ସଚିବ,
ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗ,
ଭୁବନେଶ୍ୱର

# ଆପଣ ପେନ୍‌ସନ୍ ପାଇବେ କି ?

ତାହାହେଲେ ବୁଝନ୍ତୁ–

(୧) ଜନ୍ମ ତାରିଖ ସେବା ପୁସ୍ତିକାରେ ଠିକ୍ ଭାବରେ ଲେଖା ଅଛି କି ? ଯଦି ଅସୁବିଧା ଥାଏ, ସରକାରୀ ଆଦେଶ ନେଇ ଠିକ୍ କରନ୍ତୁ ।

(୨) ସେବା ପୁସ୍ତିକା ଓ ପ୍ରତିରୂପ ସେବା ପୁସ୍ତିକା ଅଛି କି ? ଯଦି ନାହିଁ ତେବେ ତିଆରି କରାଇ ନିଅନ୍ତୁ ଓ ଚାକିରୀ ଆରମ୍ଭ ଠାରୁ ଶେଷ ପର୍ଯ୍ୟନ୍ତ ଚାକିରି ସମ୍ପର୍କୀୟ ସମସ୍ତ ବିବରଣୀ ସଠିକ୍ ଭାବରେ ଲେଖାନ୍ତୁ । ଯଦି କୌଣସି ଚାକିରି ସମୟର ବିରାମ ଘଟିଥାଏ ତେବେ ତାକୁ ନିୟମିତ କରାଇ ନିଅନ୍ତୁ ।

(୩) ସେବ ପୁସ୍ତିକାରେ ଛୁଟିର ହିସାବ ଠିକ୍ ଭାବରେ ଅଛି ତ ? ଯଦି ନଥାଏ ତେବେ ତାହା ହିସାବ କରାଇ ନିଅନ୍ତୁ ଓ ନେଇଥିବା ଛୁଟି ଠିକ୍ ଭାବରେ ଦରଜ କରାନ୍ତୁ ।

(୪) କୌଣସି ସ୍ଥାନକୁ ଚାକିରି କାଳ ମଧ୍ୟରେ କର୍ମାନ୍ତର ପ୍ରେରଣରେ ଯାଇ ଅଛନ୍ତି କି ? ଯଦି ଯାଇଥାନ୍ତି, ତାହା ନିୟମିତ କରାଇ ନିଅନ୍ତୁ ।

(୫) ଚାକିରି କାଳ ମଧ୍ୟରେ କୌଣସି ପ୍ରକାର ଅଗ୍ରୀମ, ଯଥା–ଘର ତିଆରି, ମଟର ସାଇକେଲ୍ କିଣିବା, ଗସ୍ତ ଓ ବଦଳି ଦରମା ଇତ୍ୟାଦି ପାଇଁ ନେଇଛନ୍ତି କି ? ଯଦି ନେଇଥାନ୍ତି, ତାହା ଭରଣା କରାଯିବାର ବିବରଣୀ, ଯଥା–ଟ୍ରେଜରୀ ଭାଉଚର ସଂଖ୍ୟା, ତାରିଖ, ଟଙ୍କାର ପରିମାଣ, ଟ୍ରେଜେରୀର ନାମ ଇତ୍ୟାଦି ଦରମା ଦେଉଥିବା ଅଫିସରଙ୍କର ନିକଟରେ ଦାଖଲ କରି ଅବସର ଗ୍ରହଣର ଯଥେଷ୍ଟ ପୂର୍ବରୁ ନା' ଦାବି ପତ୍ର ଗ୍ରହଣ କରନ୍ତୁ ।

(୬) ଚାକିରି କାଳ ମଧ୍ୟରେ ପଦୋନ୍ନତି ପାଇଛନ୍ତି କି ? ଯଦି ପାଇଥାନ୍ତି ତାହାହେଲେ ପଦବୀ ଅନୁସାରେ ଦରମା ନିର୍ଦ୍ଧାର୍ଯ୍ୟ ହୋଇ ସେବା ପୁସ୍ତିକାରେ ଉଲ୍ଲେଖ ହୋଇଛି କି–ଯଦି ନଥାଏ, ତାହା କରାଇ ନିଅନ୍ତୁ ।

(୭) ଦରମା କମିଶନ ଅନୁସାରେ ନିର୍ଦ୍ଧାର୍ଯ୍ୟ ଦରମା ଆପଣଙ୍କ ପ୍ରତି ଲାଗୁ କି ? ଯଦି ଲାଗୁ ହୁଏ ତାହା ଦରମା କମିଶନ ରିପୋର୍ଟ ଅନୁସାରେ ଦରମା ନିର୍ଦ୍ଧାର୍ଯ୍ୟ କରାଇ ନିଅନ୍ତୁ ।

(୮) ବକେୟା ଦରମା ଓ ବର୍ଦ୍ଧିତ ବାର୍ଷିକ ବୃଦ୍ଧିଜନିତ ପ୍ରାପ୍ୟ ମଞ୍ଜୁର କରାଇ ତାହା ସେବା ପୁସ୍ତିକାରେ ଦରଜ କରାଇ ନିଅନ୍ତୁ ।

(୯) ଚାକିରି କାଳ ମଧ୍ୟରେ ଆପଣଙ୍କ ବିରୁଦ୍ଧରେ ଅଧିକ ଦରମା ନେଇଥିବା, ଗସ୍ତ ଖର୍ଚ୍ଚ, ଅଫିସ ଖର୍ଚ୍ଚ ଇତ୍ୟାଦି ପାଇଁ ଅଗ୍ରୀମ ନେବା ସମ୍ପର୍କରେ ସମୀକ୍ଷା ରିପୋର୍ଟ ଅଛି କି ? ଯଦି ଥାଏ ତାହା ପରିପାଳନ କରି ନିଅନ୍ତୁ ଓ ସମୀକ୍ଷା ରିପୋର୍ଟରେ ଉଠିଥିବା ଆପତ୍ତିଗୁଡିକୁ ବାଦ କରାଇ ନିଅନ୍ତୁ ।

(୧୦) ଚାକିରି କାଳ ମଧ୍ୟରେ ତ୍ରୁଟି ପାଇଁ କୌଣସି ବିଭାଗୀୟ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ବିଚାରାଧୀନ ଅଛି କି ? ଯଦି ଥାଏ, ଅବସରର ଯଥେଷ୍ଟ ପୂର୍ବରୁ ତାହା ଫଏସଲା କରାଇ ନିଅନ୍ତୁ ।

(୧୧) ଆପଣଙ୍କ ନାମରେ କୌଣସି ଦେଓ୍ୱାନୀ ମକଦ୍ଦମା, ଦୁର୍ନୀତି ନିବାରଣ ମକଦ୍ଦମା, ସାର୍ଟିଫିକେଟ୍ ମକଦ୍ଦମା ଇତ୍ୟାଦି ଟଙ୍କା ଆଦାୟ ପାଇଁ ହୋଇଅଛି କି ? ଯଦି ହୋଇଥାଏ ତାହା ଅବସର ପୂର୍ବରୁ ଫଏସଲା କରାଇ ନିଅନ୍ତୁ ।

ନା ଦାବି ପତ୍ର–ଅବସର ପୂର୍ବରୁ ବିଗତ ୫ ବର୍ଷ ମଧ୍ୟରେ ଯେଉଁ କାର୍ଯ୍ୟାଳୟରେ କାମ କରିଥିବେ ସେହି କାର୍ଯ୍ୟାଳୟରୁ ନା ଦାବିପତ୍ର ସଂଗ୍ରହ କରନ୍ତୁ । କାର୍ଯ୍ୟକାଳ ମଧ୍ୟରେ ଅଫିସରୁ ନେଇଥିବା ବହି, ଆସବାବ ପତ୍ର, ଯନ୍ତ୍ରପାତି ଇତ୍ୟାଦି ଯଦି ନେଇଥାନ୍ତି ତାହା କାର୍ଯ୍ୟାଳୟକୁ ଫେରାଇ ପ୍ରାମାଣିକ ରସିଦ ନିଜ ପାଖରେ ରଖନ୍ତୁ ।

(୧୩) କାର୍ଯ୍ୟଭାର ହସ୍ତାନ୍ତରିତ କରିବା ସମୟରେ ହସ୍ତାନ୍ତର ସମ୍ପର୍କୀୟ ସମସ୍ତ କାଗଜ ପତ୍ର ଠିକ୍ ଭାବରେ ରଖନ୍ତୁ । ଯଦି କିଛି ନିଅଣ୍ଟ ଥାଏ ତାହା ଭରଣା କରନ୍ତୁ କିମ୍ବା ଛାଡ଼ କରାଇ ନିଅନ୍ତୁ ।

(୧୦) ଯଦି ସରକାରୀ ଗୃହରେ ରହୁଥାଆନ୍ତି ତାହାର ଘରଭଡ଼ା, ବିଦ୍ୟୁତ୍ ବିଲ୍, ପାଣିଭଡ଼ା ଇତ୍ୟାଦି ଯାହା ଦେୟ

ହୋଇଥାଏ ତାହା ପଇଠ କରି ପ୍ରାମାଣିକ ପତ୍ର ରଖନ୍ତୁ । ତତ୍ ସଙ୍ଗେ ଉକ୍ତ ରସିଦ ନେଇ ସମ୍ପୃକ୍ତ ଅଧିକାରୀଙ୍କୁ ଦେଖାଇ ଅବସର ପୂର୍ବରୁ ଗୃହ ଛାଡ଼ି ଦେବାର ବନ୍ଦୋବସ୍ତ କରନ୍ତୁ ।

(୧୫) ଯଦି କୌଣସି କାରଣରୁ ଅବସର ପରେ ଗୃହ ରଖିବାର ଥାଏ ତା'ହେଲେ ଲିଖିତ ଆକାରରେ ଅନୁମତି ଆଣି ଆବଶ୍ୟକ ପ୍ରାପ୍ୟ ଭରଣା କରି ୪ ମାସ ପର୍ଯ୍ୟନ୍ତ ଘର ରଖନ୍ତୁ । ତା'ପରେ ସମ୍ପୃକ୍ତ ଅଧିକାରୀଙ୍କୁ ଆବଶ୍ୟକୀୟ ରସିଦ୍ ଦେଖାଇ ଗୃହ ଛାଡ଼ନ୍ତୁ ।

(୧୬) ଭବିଷ୍ୟନିଧି ପାଣ୍ଠିରେ ଟଙ୍କା ରଖିଥିଲେ ତାହାର ବାର୍ଷିକ ହିସାବ ଫର୍ଦ୍ଦ ରଖନ୍ତୁ । ସେଥିରେ ଟଙ୍କା ଉଠାଇଥିଲେ ତାହା ପ୍ରତି ମାସର ଗଚ୍ଛିତ ଟଙ୍କାସହ ମିଳାଇ ନିଅନ୍ତୁ ଓ ଯଦି ତ୍ରୁଟି ଥାଏ ତାକୁ ଆକାଉଣ୍ଟାଣ୍ଟ୍ ଜେନେରାଲ୍‌ଙ୍କୁ ଲେଖି ଠିକ୍ କରାଇ ନିଅନ୍ତୁ ।

(୧୭) ଗ୍ରୁପ୍ ଇନ୍‌ସ୍ୟୁରାନ୍ସ ପାସ୍ ବୁକ୍ ନିଜ ପାଖରେ ରଖନ୍ତୁ ଓ ଏହାର ଏକ ନକଲ ପରିବାରଙ୍କୁ ଦିଅନ୍ତୁ । ସେଥିରେ ଦରଜ ଥିବା ଟଙ୍କା ଠିକ୍ ଭାବରେ ଲେଖା ହୋଇଛି କି ନାହିଁ ଦେଖନ୍ତୁ ।

(୧୮) ଚାକିରିରେ ଥିବା ସମୟରେ ଦେହାନ୍ତ ହେଲେ ତାଙ୍କର ଉତ୍ତରାଧିକାରୀମାନେ ଓ ନାବାଳକ ପିଲାମାନେ ନିମ୍ନ ଲିଖିତ କାଗଜାତ୍ ସଂଗ୍ରହ କରନ୍ତୁ ।

(କ) ପୌର ସଭା, ପଞ୍ଚାୟତ ସମିତି ବା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରୁ ମୃତ୍ୟୁ ସାର୍ଟିଫିକେଟ୍

(ଖ) ସମ୍ପୃକ୍ତ ତହସିଲ୍‌ଦାରଙ୍କଠାରୁ ବିଧି ସମ୍ମତ ଦାୟାଦ ସାର୍ଟିଫିକେଟ୍

(ଗ) ଯଦି ଉତ୍ତରାଧିକାରୀ ସମ୍ପର୍କରେ ବିବାଦ ଥାଏ ତାହେଲେ ଦେୱାନି ନିଯାଳୟରୁ ଉତ୍ତରାଧିକାରୀ ସାର୍ଟିଫିକେଟ୍ ଅଭିଭାବକତ୍ୱ ସାର୍ଟିଫିକେଟ୍

(୧୯) ପେନ୍‌ସନ୍ ମଞ୍ଜୁରୀ ଅଧିକାରୀ ହୋଇଥିବେ କି ? ଯଦି ହୋଇଥାନ୍ତି ତାହେଲେ ନିମ୍ନଲିଖିତ ବିଷୟ ପ୍ରତି ଦୃଷ୍ଟି ଦିଅନ୍ତୁ ।

(କ) ସେବା ପୁସ୍ତିକା ଅଧ୍ୟୟନ କରିବେ.

(ଖ) ନିର୍ଦ୍ଧାରିତ ଫର୍ମ ଯଥା–ଓ.ପି.ଆର୍. 1(କ)/ 1(ଖ)/ 1(ଗ)/ 1(ଘ), ଓ.ପି.ଆର୍. ୫. ୨. ୨(କ), ୨(ଗ), 2(କ) ଆଦି ଅବସରପ୍ରାପ୍ତ କର୍ମଚାରୀ / ପରିବାରଙ୍କୁ ପଠାଇ ୬ ମାସ ପୂର୍ବରୁ ଆଣି ତାଙ୍କୁ ଯାଞ୍ଚ କରି ଆକାଉଣ୍ଟାଣ୍ଟ ଜେନେରାଲ/ କଣ୍ଟ୍ରୋଲର ଅଫ ଆକାଉଣ୍ଟସ୍‌କୁ ଫଇସଲା କରିବା ପାଇଁ ପଠାଇବେ ।

(ଗ) ଭବିଷ୍ୟନିଧି ପାଣ୍ଠିର ଚୂଡ଼ାନ୍ତ ପ୍ରତ୍ୟାହାର ପାଇଁ ଅବସରର ୪ ମାସ ପୂର୍ବରୁ ଯାଞ୍ଚ କରି ଆକାଉଣ୍ଟାଣ୍ଟ ଜେନେରାଲଙ୍କୁ ପଠାଇବେ ।

(ଘ) ଗ୍ରୁପଇନସ୍ୟୁରାନ୍ସ ଯୋଜନାର ଚୂଡ଼ାନ୍ତ ପ୍ରତ୍ୟାହାର ପାଇଁ ଅବସରର ଠିକ୍ ପରେ ପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତୁ ।

(ଙ) ଗତ ୫ ବର୍ଷର ଦାବୀପତ୍ର ସମ୍ପୃକ୍ତ କାର୍ଯ୍ୟାଳୟରୁ ସଂଗ୍ରହ କରନ୍ତୁ

(ଚ) ଅବ୍ୟବହୃତ ୨୪୦ ଦିନ ପର୍ଯ୍ୟନ୍ତ ଛୁଟି ଦରମା ମଞ୍ଜୁରୀ କରନ୍ତୁ ଓ ତୁରନ୍ତ ଦିଅନ୍ତୁ

(ଛ) ଚିହ୍ନଟ କାଗଜପତ୍ର (ପ୍ରତିଲିପିକା) (i)ସ୍ୱାମୀ ଓ ସ୍ତ୍ରୀଙ୍କର ଯୁଗ୍ମ ଫଟୋ (ii)ସ୍ୱୀକୃତି ସ୍ୱାକ୍ଷର (iii)ପରିବାର ସଦସ୍ୟଙ୍କ ସମ୍ପର୍କରେ ବିସ୍ତୃତ ବିବରଣୀ (iv)ବାମହସ୍ତର ବୃଦ୍ଧାଙ୍ଗୁଳିର ଚିପଚିହ୍ନ (v)ଚାକିରିକାଳର ବିସ୍ତୃତ ବିବରଣୀ (vi)ଶେଷ ଦରମାର ସାର୍ଟିଫିକେଟ୍ (vii)ଦାବୀ ପତ୍ର (viii)ପେନ୍‌ସନ୍ ଓ ଗ୍ରାଚ୍ୟୁଇଟିର ହିସାବ ଫର୍ଦ୍ଦ (ix)ଶାରିରୀକ ଅକ୍ଷମ ପାଇଁ ପେନ୍‌ସନ୍ ପାଉଥିଲେ ତା'ର ବିବରଣୀ ଓ ଉପଯୁକ୍ତ ଡାକ୍ତରଙ୍କ ସାର୍ଟିଫିକେଟ୍

(୨୦) ସରକାରୀ କର୍ମଚାରୀ ମୃତ ହୋଇଥିଲେ ପେନ୍‌ସନ୍ ମଞ୍ଜୁରୀ ଅଧିକାରୀ ନିମ୍ନ କାଗଜାତ୍ ସଂଗ୍ରହ କରିବେ । (କ) ଓ.ପି.ଆର୍. 18, 14, 12 (ଖ) ମୃତ୍ୟୁ ସାର୍ଟିଫିକେଟ୍ (ଗ) ଉତ୍ତରାଧିକାରୀ ସାର୍ଟିଫିକେଟ୍ (ଘ) ପରିବାରର ସଦସ୍ୟମାନଙ୍କର ଚିହ୍ନଟ୍ (i) ଫଟୋ (ii) ସ୍ୱୀକୃତ ସାକ୍ଷର (iii) ବାମ ହସ୍ତ ବୃଦ୍ଧାଙ୍ଗୁଳିର ଚିପଚିହ୍ନ ପ୍ରତିଲିପିକ (ଙ) ଚାକିରି କାଳର ବିବରଣୀ, (ଚ) ଅଦ୍ୟତନ ସେବା ପୁସ୍ତିକା (ଛ) ଶେଷ ଦରମାର ପ୍ରମାଣପତ୍ର (ଜ) ନା ଦାବି ପତ୍ର (ଝ) କୌଣସି ଦାବୀ ଆଦାୟଯୋଗ୍ୟ ହୋଇଥିଲେ ତାହାର ବିସ୍ତୃତ ବିବରଣୀ (ଞ) ଛୁଟିର ବିବରଣୀ (ଟ) ପାରିବାରିକ ପେନ୍‌ସନ୍ ଓ ଗ୍ରାଚ୍ୟୁଇଟ୍‌ର ହିସାବ (ଠ) ଗ୍ରାଚ୍ୟୁଇଟ୍ ପାଇଁ ମନୋନୟନ ଫର୍ମ ନମ୍ବର ଓ.ପି.ଆର୍. 1(କ), 1(ଖ), 1(ଘ), (ଡ) ନାବାଳକମାନଙ୍କ ପାଇଁ ଅଭିଭାବକତ୍ୱ ସାର୍ଟିଫିକେଟ୍

(୨୧) କମ୍ୟୁଟେସନ– ପେନ୍‌ସନ୍ କମ୍ୟୁଟେସନ କରିବା ପାଇଁ ଚାହିଁଲେ ନିମ୍ନ ଲିଖିତ କାଗଜପତ୍ର ଦରକାର

(କ) ଓ.ପି.ଆର୍. 6, ଓ.ପି.ଆର୍. (ଗୋ) ଏହା ସହିତ ଅନୁଚ୍ଛେଦ ୨ରେ ପେନ୍‌ସନ୍ ମଞ୍ଜୁରୀ ଅଧିକାରୀଙ୍କର ମଞ୍ଜୁରୀ ଆଦେଶ

(ଖ) ଅବସରକାଳରୁ ୧ ବର୍ଷ ସମୟ ବିତିଯାଇଥିଲେ ଶାରୀରିକ ସୁସ୍ଥତା ସମ୍ପର୍କରେ ଡାକ୍ତରଙ୍କର ପ୍ରମାଣପତ୍ର ଫର୍ମ ନମ୍ବର ୬(ଖ)ରେ ଦେବାକୁ ପଡ଼ିବ ଓ ବିଳମ୍ବର କାରଣ ସହ ପେନ୍‌ସନ୍ ମଞ୍ଜୁରୀ ଅଧିକାରୀଙ୍କର ଆଦେଶ ଫର୍ମ ନମ୍ବର ୬(କ)ରେ ଦେବେ ।

(୨୨) ପେନ୍‌ସନ୍ ଭୋଗୀ ଓ ପେନ୍‌ସନ୍ ମଞ୍ଜୁରୀ ଅଧିକାରୀଙ୍କର ମନୋବୃତ୍ତି ସହଯୋଗ ମୂଳକ ହେବା ଦରକାର । ମନୋମାଳିନ୍ୟ ନକରି ଆପୋଷ ମଧ୍ୟରେ କାର୍ଯ୍ୟ ସମାପନ କରିବା ଦରକାର । ପେନ୍‌ସନ୍ ଭୋଗୀମାନେ ଯେ ଆମର ଲୋକ ଏକଥା ପେନ୍‌ସନ୍ ଅଧିକାରୀ ଓ ସେମାନଙ୍କର କର୍ମଚାରୀମାନେ ଜାଣିରଖିବା ଦରକାର ।

(୨୩) ଯଦି ପେନ୍‌ସନ୍ ସମ୍ବନ୍ଧୀୟ କାଗଜାତ ପ୍ରସ୍ତୁତ କରିବା ପାଇଁ ଆବଶ୍ୟକ ଜ୍ଞାନ ନଥାଏ ତାହେଲେ ସେ ସମ୍ପର୍କରେ ସମ୍ପୃକ୍ତ ବିଭାଗ ଅନୁଷ୍ଠାନଙ୍କଠାରୁ ବୁଝିନେବା ଆବଶ୍ୟକ ।

---





ୟୁନିଟ୍ - ୧ ସରକାରୀ ଉଚ୍ଚ ବିଦ୍ୟାଳୟ ପଡ଼ିଆରେ ଅନୁଷ୍ଠିତ ପତାକା ଅବତରଣ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଜାତୀୟ ପତାକା ପ୍ରତି ସମ୍ମାନ ପ୍ରଦର୍ଶନ କରୁଛନ୍ତି ।



ଓଡ଼ିଶାରେ ପୁଞ୍ଜି ବିନିଯୋଗ କରିବା ସଂପର୍କରେ ଜାପାନର ପ୍ରସିଦ୍ଧ କଂପାନୀ ଇଟୋଚୁର ସଭାପତିଙ୍କ ଉପଦେଷ୍ଟା ମି.ଜି. ଓ ମିତାଙ୍କ ନେତୃତ୍ୱରେ ଆସିଥିବା ଏକ ପ୍ରତିନିଧିଦଳ ରାଜ୍ୟ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତକୁମାର ବିଶ୍ୱାଳ, ଶିକ୍ଷାମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଓ ରାଜ୍ୟ ସରକାରଙ୍କ ପଦସ୍ଥ କର୍ମକର୍ତ୍ତାଙ୍କ ସହ ଆଲୋଚନା କରୁଛନ୍ତି



କଟକସ୍ଥିତ ଓଡ଼ିଆ ବଜାରଠାରେ ଆୟୋଜିତ ନେତାଜୀ ସୁଭାଷ ବୋଷଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବକୁ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର ଉଦ୍‌ଘାଟନ କରୁଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉପସ୍ଥିତ ଅଛନ୍ତି




କଳିଙ୍ଗ ଅଶୋକ ହୋଟେଲଠାରେ ସମନ୍ୱିତ ଗ୍ରାମ୍ୟ ଆଞ୍ଚଳିକ ଉନ୍ନୟନ ଯୋଜନା ଉପରେ ଆଧାରିତ ଭାରତ ଇସ୍ରାଏଲ ସହଯୋଗରେ ସ୍ନାତକୋତ୍ତର ପାଠ୍ୟକ୍ରମ ଉଦ୍‌ଘାଟିତ



କେଉଁଝରଠାରେ ଅନୁଷ୍ଠିତ ଅଷ୍ଟାଦଶ ନିଖିଳ ଉତ୍କଳ ଶ୍ରୀ ଅରବିନ୍ଦ ମହିଳା ପାଠଚକ୍ର ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଶିକ୍ଷମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ , ଗଣଶିକ୍ଷାମନ୍ତ୍ରୀ ଶ୍ରୀଜୟଦେବ ଜେନା ଓ ଶ୍ରୀ ମନୋଜ ଦାସ, ସାଂସଦ ଶ୍ରୀ ମାଧବ ସର୍ଦ୍ଦାର



ନୂଆଦିଲ୍ଲୀସ୍ଥିତ ଇସ୍ରାଏଲ ଦୂତାବାସରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଇସ୍ରାଏଲ କୃଷି ବିଭାଗ ମୁଖ୍ୟଙ୍କ ସହ ଆଲୋଚନା କରୁଛନ୍ତି । କୃଷି ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ ଉପସ୍ଥିତ ଅଛନ୍ତି




ଓଡ଼ିଶା ସଚିବାଳୟ ସେବାସଂଘ ଓ ଓଡ଼ିଶା ଅମଲାସଂଘର ମିଳିତ ଅଧିବେଶନରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି




କଟକ କଲିଜିଏଟ୍ ସ୍କୁଲ ପରିସର ମଧ୍ୟରେ ପୁରାତନ ଛାତ୍ରସଂସଦ ଦ୍ୱାରା ଆୟୋଜିତ ନେତାଜୀ ଜନ୍ମ ଶତବାର୍ଷିକୀ ସମାରୋହରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର, ମୁଖ୍ୟମନ୍ତ୍ରୀ ଶ୍ରୀଜାନକୀ ବଲ୍ଲଭ ପଟ୍ଟନାୟକ ଓ ସମାଜ ସଂପାଦକ ଶ୍ରୀରାଧାନାଥ ରଥ ।



ସୂଚନାଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀଜାନକୀବଲ୍ଲଭ ପଟ୍ଟନାୟକଙ୍କ ରାଜ୍ୟସ୍ତରୀୟ ନେତାଜୀ ସୁବାଷ ଚନ୍ଦ୍ର ବୋଷ ଜନ୍ମଶତବାର୍ଷିକୀ ଜୟନ୍ତୀ ଉତ୍ସବକୁ ଉଦ୍‌ଘାଟନ କରୁଛନ୍ତି



ରବିବାରସଠାରେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତକୁମାର ବିଶ୍ୱାଳ ଓଡ଼ିଶା ଭୂତଳ ଜଳ ସଂପର୍କିତ ଏକ ରିପୋର୍ଟ ଉନ୍ମୋଚନ କରୁଛନ୍ତି



ଉତ୍କଳସଂଗୀତ ନାଟକ ମହାବିଦ୍ୟାଳୟ ପରିସର ମଧ୍ୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ରୋଟାରୀ ଆନ୍ତର୍ଜାତିକ ଜିଲ୍ଲା ୩୨୬୦ ସମ୍ମିଳନୀକୁ ଉଦ୍‌ଘାଟନ କରୁଛନ୍ତି



ସୂଚନା ଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ରାଜ୍ୟ ପୁରସ୍କାର ପ୍ରାପ୍ତ କୃତୀ ଶିକ୍ଷକମାନଙ୍କୁ ସମ୍ମାନିତ କରୁଛନ୍ତି ।



କଟକ ଓଡ଼ିଆ ବଜାରସ୍ଥିତ ନେତାଜୀ ସେବାସଦନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଗୋଟିଏ ଶିଶୁକୁ ପଲ୍‌ସ ପୋଲିଓ ଟିକା ପ୍ରଦାନ କରୁଛନ୍ତି



ରବୀନ୍ଦ୍ର ମଣ୍ଡପଠାରେ ଆୟୋଜିତ ରାଜ୍ୟ ଯୁବ ସାଂସ୍କୃତିକ ଉତ୍ସବରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର କବି ରାଜଶ୍ରୀ ନାୟକଙ୍କୁ 'ରାଜ୍ୟ ଯୁବ ପୁରସ୍କାର' ପ୍ରଦାନ କରୁଛନ୍ତି ।



ସଚିବାଳୟଠାରେ ଆହୂତ ରାଜ୍ୟ ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଅଧ୍ୟକ୍ଷତା କରୁଛନ୍ତି



ରାଜ୍ୟ ସଚିବାଳୟଠାରେ ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ ଜନ୍ମ ଶତବାର୍ଷିକୀ ପାଳନ ଉପଲକ୍ଷେ ଆୟୋଜିତ ଏକ ସାମ୍ୱାଦିକ
ସମ୍ମିଳନୀରେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତକୁମାର ବିଶ୍ୱାଳ ଓ ସାଂସଦ ଶ୍ରୀ ଅଜିତ୍ କୁମାର ପାଣ୍ଡା ।



କଟକଠାରେ ମୁଖ୍ୟମନ୍ତ୍ରୀ ଶ୍ରୀଜାନକୀ ବଲ୍ଲଭ ପଟ୍ଟନାୟକ ମହାତ୍ମାଗାନ୍ଧୀଙ୍କ ଚିତାଭସ୍ମ ପ୍ରତି ସମ୍ମାନ ଜଣାଉଛନ୍ତି ।
ଶ୍ରୀ ତୁଷାରଗାନ୍ଧୀ ଓ ଅବକାରୀ ମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ ଉପସ୍ଥିତ ଅଛନ୍ତି



ଗଙ୍ଗାନଗର ଛକଠାରେ ପଲ୍ସ୍ ପୋଲିଓ ଦିବସ ଅବସରରେ ଅତିରିକ୍ତ ମୁଖ୍ୟଶାସନ ସଚିବ
ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଗୋଟିଏ ଶିଶୁକୁ ପୋଲିଓ ଟିକା ପ୍ରଦାନ କରୁଛନ୍ତି

# ଓଡ଼ିଶାରେ ଜନଶିକ୍ଷା

କଳ୍ପନା ସାହୁ

ଦୁଇ ହଜାର ମସିହାରେ ପଦାର୍ପଣ କରିବାକୁ ଆଉ ମାତ୍ର ତିନି ବର୍ଷ ତିନିମାସ ବାକି । ସାର୍ବଜନୀନ ପ୍ରାଥମିକ ଶିକ୍ଷା, ନିରକ୍ଷରତା ଦୂରୀକରଣ, ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ସୁବିଧାର ସୁଯୋଗ ଓ ଜନସଂଖ୍ୟା ନିୟନ୍ତ୍ରଣ ଇତ୍ୟାଦି ଜାତୀୟ ସମସ୍ୟାର ସମାଧାନ ନିର୍ଦ୍ଦିଷ୍ଟ ସମୟ ସୀମାରେ ହୋଇ ପାରିବା ସମ୍ଭବ ମନେ ହୁଏ ନାହିଁ । ସ୍ୱାଧୀନତା ପରଠାରୁ ନିରକ୍ଷରତା ଦୂରୀକରଣ ତଥା ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରବର୍ତ୍ତନର ଏକ ବିଧିବଦ୍ଧ ଉଦ୍ୟମ ହୋଇ ଆସୁଅଛି । ଶିକ୍ଷା, ଦେଶର ସର୍ବାଙ୍ଗୀନ ଉନ୍ନତିର ଯେ, ଅସଲ ଚାବିକାଠି, ଏହା ସମାଜ ବିଜ୍ଞାନୀ, ଶିକ୍ଷାବିତ୍, ରାଜନୈତିକ ନେତା, ସ୍ୱେଚ୍ଛାସେବୀ ସଙ୍ଘ ଓ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଉପଲବ୍ଧି କଲେ ମଧ୍ୟ ଆଶାନୁରୂପ ଫଳ ମିଳି ପାରୁନାହିଁ । ପ୍ରତ୍ୟେକ ପଞ୍ଚବାର୍ଷିକ ଯୋଜନାର ପ୍ରାରମ୍ଭରେ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ବ୍ୟକ୍ତି ବିଶେଷଙ୍କୁ ସାକ୍ଷର କରିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଉଅଛି । କିନ୍ତୁ ଦେଖାଯାଉଅଛି, ସେହି ପଞ୍ଚବାର୍ଷିକ ଯୋଜନାର ଶେଷରେ ନିରକ୍ଷରଙ୍କ ସଂଖ୍ୟା ଧାର୍ଯ୍ୟ ସଂଖ୍ୟାଠାରୁ ବହୁ ପରିମାଣରେ ବଢ଼ି ଯାଉଅଛି । ସାକ୍ଷରତା ହାର ବଢ଼ିବା ସଙ୍ଗେ ସଙ୍ଗେ ନିରକ୍ଷରଙ୍କ ସଂଖ୍ୟା ମଧ୍ୟ ବଢ଼ି ଚାଲିଛି । ଏହାର ମୁଖ୍ୟ କାରଣ ହେଉଛି ଅବାଞ୍ଛିତ ଜନସଂଖ୍ୟା ବୃଦ୍ଧି ।

ମନରେ ଏକ ଚିରନ୍ତନ ପ୍ରଶ୍ନ ଉଠେ ଯେ, କେତେ ଲୋକଙ୍କୁ ପ୍ରକୃତରେ ସାକ୍ଷର କରାଯାଇ ପାରିବ ? ଏଣୁ ଜନସଂଖ୍ୟା ଶିକ୍ଷା କାର୍ଯ୍ୟକ୍ରମ ଜନଶିକ୍ଷାରେ ଅନ୍ତର୍ଭୁକ୍ତ କରାଯାଇ ଅଛି । ଜାତୀୟ ସାକ୍ଷରତା ମିଶନ୍ ୧୯୮୮ ମସିହା ମେ ୫ ତାରିଖଠାରୁ ଏକ ସ୍ୱଳ୍ପକାଳୀନ ଭିତ୍ତିରେ ଏହି କାର୍ଯ୍ୟ ପାଇଁ ଦୃଢ଼ ପଦକ୍ଷେପ ନେଇ ଆସୁଅଛି । ୧୯୯୫ ମସିହା ସୁଦ୍ଧା ଭାରତର ୧୫ ରୁ ୩୫ ବର୍ଷ ବୟସର ଆଠ କୋଟି ନିରକ୍ଷରଙ୍କୁ ସାକ୍ଷର କରିବାର ଲକ୍ଷ୍ୟ ଧାର୍ଯ୍ୟ କରା ଯାଇଥିଲା । ଓଡ଼ିଶାରେ ୧୯୯୫ ଶେଷ ସୁଦ୍ଧା ୧୫ ରୁ ୩୫ ବର୍ଷ ବୟସର ମୋଟ ୬୩ ଲକ୍ଷ ନିରକ୍ଷରଙ୍କୁ ସାକ୍ଷର କରିବାର ଲକ୍ଷ୍ୟ ରଖା ଯାଇଥିଲା । ମାତ୍ର ଦାରିଦ୍ର୍ୟ, କୁସଂସ୍କାର, ଅଶିକ୍ଷା, ଅବହେଳିତ ନାରୀଶିକ୍ଷା ଓ ଏହି କାର୍ଯ୍ୟକ୍ରମ ରୂପାୟନରେ ତ୍ରୁଟି ଯୋଗୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ବହୁ ପଛରେ ଆମେ ରହିଗଲୁ ।

ଓଡ଼ିଶା, ଭାରତର ଏକ ଦରିଦ୍ରତମ ରାଜ୍ୟ । ୧୯୯୧ ମସିହା ଜନଗଣନା ଅନୁସାରେ ଓଡ଼ିଶାର ମୋଟ ଜନସଂଖ୍ୟା ଥିଲା ୩.୧୭ କୋଟି । ଏହା ଭାରତର ମୋଟ ଜନସଂଖ୍ୟାର ଶତକଡ଼ା ୩.୭୪ ଭାଗ । ଓଡ଼ିଶାର ପ୍ରାୟ ଶତକଡ଼ା ୮୬ ଭାଗ ଲୋକ ଗ୍ରାମାଞ୍ଚଳରେ ଓ ସହରତଳି ଅଞ୍ଚଳରେ ବାସ କରନ୍ତି । ଏମାନେ ପ୍ରାୟ ସମସ୍ତେ ଦାରିଦ୍ର୍ୟର ସୀମାରେଖା ତଳେ ଓ ଏମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଜଣ ନିରକ୍ଷର । କେତେକ ପରିସଂଖ୍ୟାନରୁ ଜଣାଯାଏ ଯେ ଯେଉଁ ରାଜ୍ୟ ଯେତେ ଦରିଦ୍ର ତା'ର ସାକ୍ଷରତା ହାର ସେତେ କମ୍ । ୧୯୮୯–୯୦ ମସିହା ଆର୍ଥିକ ବର୍ଷରେ ଓଡ଼ିଶାର ରାଜ୍ୟସ୍ତରୀୟ ଆୟ ସର୍ବ ମୋଟ ୪୭୮୦.୬୩ କୋଟି ଟଙ୍କା ଥିବା ବେଳେ ଏହାର ମୁଣ୍ଡପିଛା ଆୟ ଥିଲା ୧୫୫୭ ଟଙ୍କା ମାତ୍ର । ଅନୁସୂଚିତ ଜାତି ଓ ଉପଜାତିର ଲୋକମାନଙ୍କର ଆୟ ଅପେକ୍ଷାକୃତ ଯଥେଷ୍ଟ କମ୍ । ୧୯୯୧ ମସିହାର ଶେଷ ଭାଗରେ ଓଡ଼ିଶାର ଋଣ ଥିଲା ୩୭୮୬.୧୦ କୋଟି ଟଙ୍କା । ବର୍ତ୍ତମାନ ଓଡ଼ିଶାର ଅର୍ଥନୈତିକ ତଥା ସାମାଜିକ ସ୍ଥିତି ବହୁ ପଛରେ ପଡ଼ି ରହିଅଛି ।

ଏହା ମଧ୍ୟରେ ଓଡ଼ିଶାର ଜିଲ୍ଲା ସଂଖ୍ୟା ୩୦, ତହସିଲ ସଂଖ୍ୟା ୧୫୭, ବ୍ଲକ୍ ସଂଖ୍ୟା ୩୧୪, ଗ୍ରାମ ପଞ୍ଚାୟତ ସଂଖ୍ୟା ୫୨୬୩କୁ ବୃଦ୍ଧି ପାଇଅଛି । ରାଜ୍ୟସ୍ତରରେ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଜାତୀୟ ସାକ୍ଷରତା ମିଶନ୍ କାର୍ଯ୍ୟ କରୁଅଛି । ଏହି ମହତ୍ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ରାଜନୈତିକ ସଦିଚ୍ଛା ପ୍ରକାଶ ପାଇଅଛି । ଜିଲ୍ଲା ସ୍ତରରେ ଜିଲ୍ଲାପାଳ ସାକ୍ଷରତା ସମିତିର ଅଧ୍ୟକ୍ଷ ଅଛନ୍ତି । ଏହାଛଡ଼ା ରାଜ୍ୟର ବିଭିନ୍ନ ବର୍ଗର କର୍ମୀ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ସ୍ୱାଧୀନତା ସଂଗ୍ରାମୀ, ଶିକ୍ଷକ, ଅଧ୍ୟାପକ, ସ୍କୁଲ କଲେଜର ଛାତ୍ରଛାତ୍ରୀ, ଲୋକ ସଭା ଓ ରାଜ୍ୟ ବିଧାନ ସଭାର ପ୍ରତିନିଧିମାନଙ୍କର ଆନ୍ତରିକ ସହଯୋଗ ଏହି କାର୍ଯ୍ୟକ୍ରମକୁ ଯେ ନିଶ୍ଚିତ ଭାବରେ ଆଗେଇ ନେଇଛି ଏଥିରେ ସନ୍ଦେହ ନାହିଁ ।

ଆମ ରାଜ୍ୟର ବିଭିନ୍ନ ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମର ଆରମ୍ଭ ୧୯୯୦ ମସିହାଠାରୁ ଆରମ୍ଭ ହୋଇଅଛି । ଏହାର ଏକ ତାଲିକା ନିମ୍ନରେ ପ୍ରଦତ୍ତ କରାହେଲା ।

୧୯୯୦-୯୧-ସୁନ୍ଦରଗଡ଼

୧୯୯୧-୯୨-ରାଉରକେଲା, କେନ୍ଦୁଝର, ଢେଙ୍କାନାଳ

୧୯୯୨-୯୩-କଳାହାଣ୍ଡି, ବଲାଙ୍ଗୀର, ନୂଆପଡ଼ା, ସୋନପୁର, ଏବଂ ଅନୁଗୁଳ

୧୯୯୩-୯୪-କୋରାପୁଟ, ଗଜପତି, ମାଲକାନଗିରି, ନୟାଗଡ଼, ସମ୍ବଲପୁର

୧୯୯୪-୯୫-ଝାରସୁଗୁଡ଼ା

୧୯୯୫-୯୬-ବାଲେଶ୍ୱର, କଟକ, ଖୋର୍ଦ୍ଧା, ମୟୂରଭଞ୍ଜ, ପୁରୀ

ଇତିମଧ୍ୟରେ ସୁନ୍ଦରଗଡ଼, ଗଞ୍ଜାମ, ଢେଙ୍କାନାଳ, କେନ୍ଦୁଝର, ଅନୁଗୁଳ, ଝାରସୁଗୁଡ଼ା, ମାଲକାନଗିରି, ନୟାଗଡ଼, ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାରେ ସାକ୍ଷରତା ପରବର୍ତ୍ତୀ ଶିକ୍ଷା ଓ ନିରନ୍ତର ଶିକ୍ଷାର କାର୍ଯ୍ୟକ୍ରମ ଆରମ୍ଭ କରାଗଲାଣି । ଓଡ଼ିଶାର ସରକାରୀ ସ୍ତରରେ ଜନଶିକ୍ଷା ନିର୍ଦ୍ଦେଶାଳୟ ଏବଂ ସ୍ୱୟଂ ଶାସିତ ସଂସ୍ଥା ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଏହି କାର୍ଯ୍ୟକ୍ରମ ପରିଚାଳନା କରୁଅଛନ୍ତି ।

ଏ ସବୁ ଉଦ୍ୟମ ସତ୍ତ୍ୱେ ଓଡ଼ିଶାରେ ସାକ୍ଷରତା କାର୍ଯ୍ୟକ୍ରମ ଉଲ୍ଲେଖନୀୟ ସଫଳତା ହାସଲ କରି ପାରିନାହିଁ । ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମ ଯେପରି ଗଣଆନ୍ଦୋଳନ ରୂପେ ଆରମ୍ଭ ହୋଇଥିଲା ଓ ସମାଜର ସବୁସ୍ତରର ଲୋକେ ଏହି କାର୍ଯ୍ୟକ୍ରମର ସଫଳତା ପାଇଁ ଆଗେଇ ଆସିଥିଲେ, ସାକ୍ଷରତା ପରବର୍ତ୍ତୀ ନିରନ୍ତର ଶିକ୍ଷାର ଆରମ୍ଭରେ ଏହା ଧିମେଇ ଯାଇଅଛି । ଏହାର ମୁଖ୍ୟ କାରଣ ହେଉଛି ଯେଉଁମାନେ ମାମୁଲି ସାକ୍ଷର ହୋଇଗଲେ ଅର୍ଥାତ୍ ଲେଖା, ପଢ଼ା ଓ ହିସାବକିତାବ ଜାଣିଗଲେ ସେମାନେ ଭାବିଲେ ଯେ ନିରକ୍ଷରତାର ପରିସର ଭିତରୁ ସେମାନେ ବାହାରେ ଅଛନ୍ତି । ସାକ୍ଷର ହୋଇ ସାରିଲା ପରେ ଗୁଣାତ୍ମକ ଜୀବନର ବିକାଶ ପାଇଁ ସେମାନେ ଯେ ସାମର୍ଥ୍ୟ ଲାଭ କଲେ ଏହା କେହି ଅନୁଭବ କଲେ ନାହିଁ ।

ପୁନଶ୍ଚ ଯେଉଁ ଜିଲ୍ଲା ସମ୍ପୂର୍ଣ୍ଣ ସାକ୍ଷର ବୋଲି ଘୋଷଣା କରାଗଲା, ସେମାନଙ୍କୁ ଅଧିକ ଶିକ୍ଷା ଦେବାର ବ୍ୟବସ୍ଥା ତୁରନ୍ତ ନିଆଗଲା ନାହିଁ । ଫଳରେ ବହୁ କଷ୍ଟରେ ସାକ୍ଷର ହୋଇଥିବା ବହୁ ପରିମାଣର ଲୋକ ପୁଣି ନିରକ୍ଷରତା ପରିସରକୁ ଫେରିଗଲେ । ଅବଶ୍ୟ ବର୍ତ୍ତମାନ ଏହି ସବୁ ଜିଲ୍ଲାମାନଙ୍କରେ ନିରନ୍ତର ଶିକ୍ଷାର ପ୍ରବର୍ତ୍ତନ ଏକ ନୂଆମୋଡ଼ ନେଇଛି । ଏହାର ପୁନର୍ଗଠନ କାର୍ଯ୍ୟ ଆରମ୍ଭ ହେଉଅଛି । ମନୁଷ୍ୟର ସମଗ୍ର ଜୀବନ ଯେ ଶିକ୍ଷା ପାଇଁ ଉଦ୍ଦିଷ୍ଟ ଏ କଥା ବୁଝିବା ପାଇଁ ଯୋଜନାମାନ ପ୍ରସ୍ତୁତ କରି କାର୍ଯ୍ୟକାରୀ କରାଯିବାର ଉଦ୍ୟମ ହେଉଅଛି । ଜନଶିକ୍ଷା ଯେ ଏକ ଅନାଗତ ଶିକ୍ଷା ଓ ବୌଦ୍ଧିକ ଜୀବନର ବିକାଶରେ ଏହା ଅପରିହାର୍ଯ୍ୟ ଏହା ବିଷୟକୁ ନେଇ ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇଅଛି ।

ଓଡ଼ିଶାରେ ଜନଶିକ୍ଷାର କାର୍ଯ୍ୟକ୍ରମ ଭାରତର ସ୍ୱାଧୀନତା ପ୍ରାପ୍ତିଠାରୁ ବିଭିନ୍ନ ସମୟରେ ପ୍ରଣୀତ ଜାତୀୟ ଶିକ୍ଷାନୀତି ସହିତ ପରିବର୍ତ୍ତିତ ହୋଇ ଚାଲିଛି । ସ୍ୱାଧୀନ ଭାରତର ପ୍ରଥମ ଶିକ୍ଷାମନ୍ତ୍ରୀ ମୌଲାନା ଆବୁଲ୍ କାଲାମ ଆଜାଦ୍ ତଥାକଥିତ ପ୍ରୌଢ଼ଶିକ୍ଷାକୁ ନୂତନ ରୂପରେଖ ଦେଲେ । ମନୁଷ୍ୟ ଜୀବନର ପରିପୂର୍ଣ୍ଣ ବିକାଶ ହେଲା ଏହାର ଲକ୍ଷ୍ୟ । ସେତେବେଳେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଥିଲେ ପଣ୍ଡିତ ଲିଙ୍ଗରାଜ ମିଶ୍ର । ଓଡ଼ିଶାରେ ସେହି ସମୟରେ ପ୍ରୌଢ଼ଶିକ୍ଷାକୁ ଲୋକଶିକ୍ଷା ବୋଲି କୁହାଗଲା । ବର୍ତ୍ତମାନ ଏହାକୁ ଜନଶିକ୍ଷା ଆଖ୍ୟା ଦିଆଯାଉଅଛି । ବିଭିନ୍ନ ସମୟରେ ଏହାର ଭିନ୍ନ ଭିନ୍ନ ନାମକରଣ ହେଲେ ମଧ୍ୟ ସ୍ୱାଧୀନତା ପରଠାରୁ ଏହାର ଉଦ୍ଦେଶ୍ୟ ମୁଖ୍ୟତଃ ଏକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ଅବହେଳିତ ନିରକ୍ଷର ନାରୀ, ତଫସିଲଭୁକ୍ତ ଅନୁସୂଚିତ ଜାତି ଓ ଉପଜାତିର ଲୋକ, ଗ୍ରାମାଞ୍ଚଳ ତଥା ସହରତଳି ଅଞ୍ଚଳର ଅବହେଳିତ ଜନତା ଯେଉଁଦିନ ବେଶି ପାଠ ପଢ଼ି ନଥିଲେ ମଧ୍ୟ ସମାଜରେ ଯୋଗ୍ୟ ଓ ସମ୍ମାନିତ ଜୀବନ କଟାଇ ପାରିବେ ଓ ଆଧୁନିକ ଯୁଗର ଯେକୌଣସି ସମସ୍ୟାର ସମାଧାନର ପନ୍ଥା ବାହାର କରିପାରିବେ ସେହି ଦିନ ହିଁ ଜନଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସାଧନ ହୋଇ ପାରିଲା ବୋଲି କୁହାଯିବ ।

---

ପ୍ରକଳ୍ପ ସହଯୋଗୀ,
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,
ଭୁବନେଶ୍ୱର

---

# ଏକବିଂଶ ଶତାବ୍ଦୀରେ ଭାରତ ସମଗ୍ର ପୃଥିବୀର ନେତୃତ୍ୱ ନେବ

**ମୁଖ୍ୟମନ୍ତ୍ରୀ**

ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଜନ୍ମ ଶତବାର୍ଷିକ ପାଳନ କମିଟି ଏବଂ ସୂଚନା ଓ ଲୋକ ସଂପର୍କ ବିଭାଗ ଆନୁକୂଲ୍ୟରେ ରସୁଲଗଡ ଛକଠାରେ ସ୍ଥାପିତ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ବ୍ରୋଞ୍ଜ ପ୍ରତିମୂର୍ତ୍ତିକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉନ୍ମୋଚନ କରି ସେଠାରେ ଆୟୋଜିତ ଏକ ବିଶାଳ ସାଧାରଣ ସଭାରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ କହିଲେ ଯେ, ଏକବିଂଶ ଶତାବ୍ଦୀରେ ଭାରତ ସମଗ୍ର ପୃଥିବୀର ନେତୃତ୍ୱ ନେବ । ସାରାଭାରତରେ ନେତାଜୀଙ୍କ ପ୍ରତିମୂର୍ତ୍ତି ବିଭିନ୍ନ ସ୍ଥାନରେ ସ୍ଥାପିତ ହୋଇଥିବା ବେଳେ ଭୁବନେଶ୍ୱରରେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପିତ ହେବା ଗର୍ବ ଓ ଆନନ୍ଦର ବିଷୟ ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ ଭାରତର ସ୍ୱାଧୀନତା ସଂଗ୍ରାମକୁ ନେତାଜୀଙ୍କ ଅବଦାନ ସଂପର୍କରେ ଅବତାରଣା କରି କହିଲେ ଯେ, ଜାତିର ଜନକ ମହାତ୍ମା ଗାନ୍ଧୀ ଅହିଂସା ନୀତିରେ ବିଶ୍ୱାସ କରୁଥିବା ବେଳେ ନେତାଜୀ ସଶସ୍ତ୍ର ବିପ୍ଳବ ଦ୍ୱାରା ଦେଶ ସ୍ୱାଧୀନ ହୋଇପାରିବ ବୋଲି କହୁଥିଲେ । ନେତାଜୀଙ୍କର ଚିନ୍ତାଧାରା ଥିଲା ଯେ, ଦେଶରୁ ଦାରିଦ୍ର୍ୟ, ଅଜ୍ଞତା ଓ କୁସଂସ୍କାର ଦୂର ନ ହେଲେ ଦେଶ ବାସ୍ତବରେ ମୁଣ୍ଡ ଟେକି ପାରିବ ନାହିଁ । ନେତାଜୀ ଜୀବିତ ଥିଲେ ଭାରତ ଭାଗ ଭାଗ ହୋଇ ନ ଥାଆନ୍ତା ବୋଲି ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ, ନେତାଜୀଙ୍କ ସ୍ୱପ୍ନକୁ ସାକାର କରିବାକୁ ହେଲେ ଆମକୁ ଦେଶର ଆର୍ଥିକ ବିକାଶ କରିବା ସଂଗେ ସଂଗେ ଦେଶରୁ ଦାରିଦ୍ର୍ୟ ଦୂର କରିବାକୁ ପଡ଼ିବ । ଏଥିପାଇଁ ଆମ୍ଭେମାନେ ସତତ ଉଦ୍ୟମ ଜାରି ରଖିବା ଆବଶ୍ୟକ ବୋଲି ସେ କହିଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କଟକସ୍ଥିତ ନେତାଜୀଙ୍କ ବାସଭବନକୁ ଜାତୀୟ ସଂଗ୍ରହାଳୟ କରିବା ପାଇଁ ପ୍ରସ୍ତାବ ଦିଆଯାଇଥିବା ସଂପର୍କରେ ସୂଚାଇ କଟକ ରୋଡକୁ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ନାମରେ ନାମିତ କରାଯାଇଥିବା ପ୍ରକାଶ କରିଥିଲେ ।

ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ସଭାପତିତ୍ୱ କରି କହିଲେ, ନେତାଜୀଙ୍କ ବୀରତ୍ୱ ପାଇଁ ଦେଶ ଆଜି ଗର୍ବିତ । ନେତାଜୀଙ୍କର ଗଭୀର ଓଡ଼ିଆ ପ୍ରୀତି ଥିଲା । ଅହିଂସା ମାଧ୍ୟମରେ ଦେଶ ସ୍ୱାଧୀନ ହୋଇ ପାରିବ ନାହିଁ ବୋଲି ତାଙ୍କ ଚିନ୍ତା ଥିଲା । ଏଥିପାଇଁ ସେ ବ୍ରିଟିଶ ସରକାର ବିରୁଦ୍ଧରେ ସବୁବେଳେ ସଂଗ୍ରାମ କରୁଥିଲେ । ପ୍ରାକୃତିକ ସଂପଦକୁ ବିନିଯୋଗ କରି ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କର ଉନ୍ନତି କଲେ ଏହାହିଁ ହେବ ଆମର ତାଙ୍କ ପ୍ରତି ସମ୍ମାନ ବୋଲି ସେ ପ୍ରକାଶ କରିଥିଲେ । ଅନ୍ୟାନ୍ୟ ବକ୍ତାମାନଙ୍କ ମଧ୍ୟରେ ରାଜ୍ୟ ଅବକାରୀ ମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିଜୟ କୁମାର ପାଣି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଜଣେ ସ୍ୱାଧୀନଚେତା ସଂଗ୍ରାମୀ ଥିଲେ ବୋଲି କହିଥିଲେ । ତାଙ୍କର ନିଷ୍ଠା, ଦେଶପ୍ରେମ ଓ କର୍ତ୍ତବ୍ୟବୋଧ ଆମମାନଙ୍କୁ ଉଦବୁଦ୍ଧ କରିବା ସଂଗେ ସଂଗେ ଦିଗଦର୍ଶନ ଦେବ ବୋଲି କହିଥିଲେ ।

ପଣ୍ଡିତ ପ୍ରବୋଧ କୁମାର ମିଶ୍ର ନେତାଜୀଙ୍କ ଉପରେ ଆଧାରିତ ସ୍ୱରଚିତ ସଂସ୍କୃତ ଶ୍ଳୋକ ଆବୃତ୍ତି କରିଥିଲେ ।

ସୂଚନା ଓ ଲୋକସମ୍ପର୍କ ବିଭାଗ ଶାସନ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ ସ୍ୱାଗତ ଭାଷଣ ଦେଇ କହିଲେ ଯେ ନେତାଜୀ ଥିଲେ ଜଣେ ବିଶ୍ୱ ପୁରୁଷ ଏବଂ ଉତ୍କଳୀୟ । ତାଙ୍କର ପ୍ରତିମୂର୍ତ୍ତି ନିର୍ମାଣରେ ତିନି ଲକ୍ଷ ପଚାଶ ହଜାର ଟଙ୍କା ଖର୍ଚ୍ଚ ହୋଇଥିବା ସେ ସୂଚାଇ ଥିଲେ ଏବଂ ଏହି ବ୍ରୋଞ୍ଜ ମୂର୍ତ୍ତିକୁ ସଂପୂର୍ଣ୍ଣ କରିବା ପାଇଁ ପ୍ରାୟ ଏକ ବର୍ଷ ସମୟ ଲାଗିଥିଲା ବୋଲି କହିଥିଲେ । ବିଭାଗୀୟ ନିର୍ଦ୍ଦେଶକ ତଥା ଅତିରିକ୍ତ ଶାସନ ସଚିବ ଶ୍ରୀ ସନ୍ତୋଷ କୁମାର ମିଶ୍ର ଧନ୍ୟବାଦ ଦେଇଥିଲେ ।

## ନେତାଜୀଙ୍କ ଜନ୍ମପୀଠ ଜାତୀୟ ସ୍ମାରକୀ ହେବ

ନେତାଜୀ ସୁଭାଷ ଚନ୍ଦ୍ରଙ୍କ କଟକ ସହରସ୍ଥିତ ଜନ୍ମପୀଠକୁ ଏକ ଜାତୀୟ ସ୍ମାରକୀ ରୂପେ ପ୍ରତିଷ୍ଠା କରିବା ପାଇଁ କେନ୍ଦ୍ର ସରକାର ରାଜି ହୋଇଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରକାଶ କରିଛନ୍ତି ।

ଗତ ଜାନୁୟାରୀ ୧୮ ତାରିଖରେ କଟକରେ ନେତାଜୀ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ନେତାଜୀଙ୍କ ଜନ୍ମସ୍ଥଳୀ

ଟକରୁ ତାଙ୍କର କର୍ମପୀଠ କଲିକତାକୁ ଜୟହିନ୍ଦ ଜ୍ୟୋତି ଶାଭାଯାତ୍ରାର ଉଦ୍ଘାଟନ ଉତ୍ସବ ଉପଲକ୍ଷେ ଆୟୋଜିତ ଏକ ମାବେଶରେ ଭାଷଣ ଦେଇ ମୁଖ୍ୟମନ୍ତ୍ରୀ ଏ କଥା ପ୍ରକାଶ କରିଛନ୍ତି । ଶ୍ରୀ ପଟ୍ଟନାୟକ ତାଙ୍କ ଭାଷଣରେ କହିଲେ ଯେ ସେକ୍ସପିଅର ଓ ଟଲଷ୍ଟୟ ପ୍ରଭୃତି ମନିଷୀମାନଙ୍କର ଜନ୍ମସ୍ଥଳୀ ସୁନ୍ଦର ସହରରେ ପରିଣତ ହୋଇଛି । ତେଣୁ ନେତାଜୀ ସୁଭାଷଚନ୍ଦ୍ରଙ୍କ ଜନ୍ମସ୍ଥାନ କଟକ ସହରକୁ ଏକ ଜାତୀୟ ସହରରେ ପରିଣତ କରିବାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଉଦ୍ୟମ ଆରମ୍ଭ ହେବ । ସେଥିପାଇଁ କେନ୍ଦ୍ର ସରକାରଙ୍କ ସହଯୋଗ ଲୋଡାଯିବ । ନେତାଜୀଙ୍କ ଜନ୍ମସ୍ଥାନକୁ ଏକ ଆଦର୍ଶ ଜାତୀୟ ମ୍ୟୁଜିଅମରେ ପରିଣତ କରିବା ସଂଗେ ସଂଗେ ସେଠାରେ ଦୀର୍ଘ ଦିନ ଧରି ଚାଲୁଥିବା ଡାକ୍ତରଖାନାକୁ କେନ୍ଦ୍ର ସରକାରଙ୍କ ସହଯୋଗକ୍ରମେ ଏକ ଅତ୍ୟାଧୁନିକ ହସପିଟାଲରେ ପରିଣତ କରାଯିବ । ଏହାଛଡା ସୁଭାଷ ବୋଷ ଶିକ୍ଷା ଲାଭ କରୁଥିବା ରେଭେନ୍ସା କଲେଜିଏଟ୍ ସ୍କୁଲର ଉନ୍ନତି ବିଧାନ ପାଇଁ ମଧ୍ୟ ଉଦ୍ୟମ କରାଯିବ । ଆଜି ଏଠାରୁ ଯାଉଥିବା ଜୟହିନ୍ଦ ଜ୍ୟୋତି ନେତାଜୀଙ୍କ ଜନ୍ମସ୍ଥଳୀ କଟକ ସହ କର୍ମସ୍ଥଳୀ କଲିକତାକୁ ସଂଯୋଗ କରିବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ ରେଭେନ୍ସା କଲିଜିଏଟ୍ ସ୍କୁଲର ପ୍ରଥମ ଓଡିଆ ପ୍ରଧାନ ଶିକ୍ଷକ ସ୍ୱର୍ଗୀୟ ନାରାୟଣ ପ୍ରସାଦ ମହାନ୍ତି ଯେ କି ନେତାଜୀଙ୍କ ପ୍ରଧାନ ଶିକ୍ଷକ ଥିଲେ, ତାଙ୍କର ଫଟୋଚିତ୍ର ଉନ୍ମୋଚନ କରିଥିଲେ ।

ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ତାଙ୍କ ଭାଷଣରେ କହିଥିଲେ ଯେ ନେତାଜୀ ସୁଭାଷ ଚନ୍ଦ୍ର କେବଳ କଟକରେ ଜନ୍ମଗ୍ରହଣ କରିଥିଲେ ତାହା ନୁହେଁ, ତାଙ୍କର ଶୈଶବ ଓ କୈଶୋର ମଧ୍ୟ କଟକରେ କଟିଥିଲା । ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ନେତାଜୀଙ୍କ ସଂଗ୍ରାମ ସଂପର୍କରେ ଅବତାରଣାକରି ଭାରତବର୍ଷକୁ ସ୍ୱାଧୀନତା ଆଣିବାପାଇଁ ସେ ଈଶ୍ୱର ପ୍ରେରିତ ଥିଲେ । ନେତାଜୀଙ୍କ ଜନ୍ମସ୍ଥାନ କଟକର ସର୍ବବିଧ ଉନ୍ନତି ସାଧନ କରିବାପାଇଁ ରାଜ୍ୟସରକାର ନିଷ୍ଠାପର ଉଦ୍ୟମ କରିବେ ବୋଲି ସେ ପ୍ରକାଶ କରିଥିଲେ ।

ସଭାରେ ଅଧ୍ୟକ୍ଷତା କରି ଓଡିଶା ହାଇକୋର୍ଟର ମାନ୍ୟବର ବିଚାରପତି ଶ୍ରୀ ସୁଶାନ୍ତ ଚାଟାର୍ଜୀ କହିଲେ ସଚ୍ଚରିତ୍ରତା ଓ ନିର୍ଭୀକତା ନେତାଜୀଙ୍କ ଜୀବନର ମନ୍ତ୍ର ଥିଲା । ଏହି ମନ୍ତ୍ରରେ ସମସ୍ତେ ଉଦ୍‌ବୁଦ୍ଧ ହେବାପାଇଁ ଆହ୍ୱାନ ଜଣାଇଥିଲେ ।

ପୂର୍ବତନ କେନ୍ଦ୍ରମନ୍ତ୍ରୀ ଶ୍ରୀ ଅଜିତ କୁମାର ପାଞ୍ଜା ନେତାଜୀଙ୍କ ସଂପର୍କରେ ଭାଷଣ ଦେଇଥିଲେ ଏବଂ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ମାନିତ କରିଥିଲେ ।

## ଓଡିଶାରେ ବିଶ୍ୱସ୍ତରୀୟ ଶିଳ୍ପାଞ୍ଚଳ ପ୍ରତିଷ୍ଠା କରାଯିବ

ଓଡିଶାରେ ବିଶ୍ୱସ୍ତରୀୟ ଶିଳ୍ପାଞ୍ଚଳ ପ୍ରତିଷ୍ଠାର ସମ୍ଭାବନାକୁ ସାକାର କରିବା ଉଦ୍ଦେଶ୍ୟରେ ଅମତା ସିଟି କଂପାନୀ ଲିମିଟେଡ୍, ଥାଇଲାଣ୍ଡର ସଭାପତି ଶ୍ରୀଯୁକ୍ତ ବିକ୍ରମ କ୍ରୋମାଡିତ୍ ଗତ ୩୦.୧୨.୯୬ ରୁ ୧.୧.୯୭ ପର୍ଯ୍ୟନ୍ତ ତିନି ଦିନ ଧରି ଓଡିଶାର ବିଭିନ୍ନ ସ୍ଥାନ ଗସ୍ତ କରିଥିଲେ । ଏହି କଂପାନୀ ଶିଳ୍ପ ସମ୍ବନ୍ଧୀୟ ଭିତ୍ତିଭୂମି ପ୍ରସ୍ତୁତ କରିବାରେ ବିଶେଷ ଦକ୍ଷତା ଅର୍ଜନ କରିବା ସହିତ ଥାଇଲାଣ୍ଡରେ ବିଭିନ୍ନ ଉଦ୍ଦମାନର ଶିଳ୍ପୋଦ୍ୟାନ ଗଠନ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଅଛି । ବର୍ତ୍ତମାନ ସୁଦ୍ଧା ଏହି କଂପାନୀ ମାଧ୍ୟମରେ ୧୫୦୦ ନିୟୁତ ଡଲାର ପୁଞ୍ଜି ବ୍ୟୟ କରାଯାଇଛି ଏବଂ ୪୦୦୦ ନିୟୁତ ଡଲାର ପୁଞ୍ଜି ବିନିଯୋଗ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଗତ ଅକ୍ଟୋବର ମାସରେ ଓଡିଶାର ପ୍ରତିନିଧିମାନଙ୍କର ଥାଇଲାଣ୍ଡ ଗସ୍ତ କାର୍ଯ୍ୟକ୍ରମର ଫଳ ସ୍ୱରୂପ ଶ୍ରୀ କ୍ରୋମାଡିତ୍ ଓଡିଶା ଗସ୍ତ କରିଥିଲେ । ତାଙ୍କର ସଫଳ ଉଦ୍ୟମରେ ଥାଇଲାଣ୍ଡ ଏବଂ ଦକ୍ଷିଣ ପୂର୍ବ ଏସିଆର ବିଭିନ୍ନ ଅଞ୍ଚଳରେ ବହୁ ଶିଳ୍ପୋଦ୍ୟାନ ଗଢ଼ି ଉଠିଛି । ଏହାଦ୍ୱାରା ବହୁ ବିଶ୍ୱସ୍ତରୀୟ ସୁବିଧା ସୁଯୋଗ ଯଥା - ପକ୍କାରାସ୍ତା, ଆବର୍ଜନାପୂର୍ଣ୍ଣ ଜଳର ପୁନଃ ଉପଯୋଗ ଏବଂ ଆବର୍ଜନା ବସ୍ତୁର ପୁନଃ ବିନିଯୋଗ ଇତ୍ୟାଦି ଜନସାଧାରଣଙ୍କୁ ପ୍ରାପ୍ତ ହୋଇ ପାରୁଅଛି । ଦକ୍ଷତାର ସହିତ ଆବଶ୍ୟକୀୟ ଭିତ୍ତିଭୂମିର ବିକାଶ କରି ଏହା ଗ୍ରାହକମାନଙ୍କୁ ଯୋଗାଇ ଦିଆଯାଏ । ମୁଖ୍ୟତଃ ଟୟୋଟା, ସୋନି ଓ କଲଗେଟ ପାମୋଲିନ୍ ଇତ୍ୟାଦି ପ୍ରମୁଖ କଂପାନୀମାନେ ହିଁ ଏହାର ମୁଖ୍ୟ ଗ୍ରାହକ ଅଟନ୍ତି ।

କ୍ରୋମାଡିତ୍ ଓଡିଶାର ବିଭିନ୍ନ ଅଞ୍ଚଳ ଯଥା: ପାରାଦୀପ, ହରିଦାଶପୁର, ପୁରୀ ଏବଂ ଭୁବନେଶ୍ୱର ଇତ୍ୟାଦି ସ୍ଥାନ ଭ୍ରମଣ କରିଥିଲେ ଓ ଏ ସଂପର୍କରେ ଓଡିଶାର ବରିଷ୍ଠ କର୍ମକର୍ତ୍ତାମାନଙ୍କ ସହିତ ବିଶଦ ଆଲୋଚନା କରିଥିଲେ ।

# ଶତାବ୍ଦୀ ଶେଷକୁ ରାଜ୍ୟରେ ଖାଦ୍ୟଶସ୍ୟ ଉତ୍ପାଦନ ଦୁଇଗୁଣ ହେବ

**ମୁଖ୍ୟମନ୍ତ୍ରୀ**

ଚଳିତ ଶତାବ୍ଦୀ ଶେଷ ଆଡକୁ ରାଜ୍ୟରେ ଖାଦ୍ୟଶସ୍ୟର ଉତ୍ପାଦନ ଦୁଇଗୁଣ ବୃଦ୍ଧିପାଇବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଆଶା ପ୍ରକାଶ କରିଛନ୍ତି ।

ରବି କାର୍ଯ୍ୟକ୍ରମର ପ୍ରସ୍ତୁତି ସଂପର୍କରେ ସମୀକ୍ଷା କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଧାନ ଉତ୍ପାଦନ ବୃଦ୍ଧିପାଇଁ ଉତ୍କୃଷ୍ଟ ଧରଣର ଅଧିକ ଅମଳକ୍ଷମ ବିହନର ବ୍ୟବହାରପାଇଁ ଏକ ସମୟାନୁବନ୍ଧ କାର୍ଯ୍ୟକ୍ରମ ରଖାଯିବା ଉଚିତ । ହୀରାକୁଦ ଜଳସେଚିତ ଅଞ୍ଚଳର ଏକ ଲକ୍ଷ ହେକ୍ଟର ଜମିରେ ଏହି ବିହନ ପ୍ରୟୋଗ କରାଗଲେ ହେକ୍ଟର ପିଛା ଉତ୍ପାଦନ ୬ ଟନରୁ ସହଜରେ ୧୦ ଟନକୁ ବୃଦ୍ଧି ପାଇପାରିବ । ଚଳିତ ବର୍ଷ ଖରିଫ ଋତୁରେ ୫ ହଜାର କେ.ଜି. ଓ ରବି ପାଇଁ ୧୦ ହଜାର କେ.ଜି. ହାଇବ୍ରିଡ ଧାନ ବିହନ ରାଜ୍ୟର ଚାଷୀମାନଙ୍କୁ ଯୋଗାଇ ଦିଆଯିବ ଓ ତା'ପରେ ୨ ବର୍ଷପାଇଁ ଖରିଫ କ୍ଷେତ୍ରରେ ଯଥାକ୍ରମେ ୧୦ ହଜାର ଓ ୧୫ ହଜାର ଓ ରବି କ୍ଷେତ୍ରରେ ୧୫ ହଜାର ଓ ୨୦ ହଜାର ହାଇବ୍ରିଡ ଧାନ ବିହନ ଚାଷୀମାନଙ୍କୁ ଯୋଗାଇ ଦେବାକୁ ଲକ୍ଷ୍ୟ ରଖିବା ପାଇଁ ବୈଠକରେ ସ୍ଥିର କରାଯାଇଛି ।

ଚଳିତ ବର୍ଷ ଉତ୍କୃଷ୍ଟ ଚିନାବାଦାମ ମଞ୍ଜି ଗତବର୍ଷ ଅପେକ୍ଷା ୪ ଗୁଣ ଅଧିକ ଯୋଗାଇ ଦିଆଯାଇଛି । ଏହା ଫଳରେ ଚିନାବାଦାମ ଉତ୍ପାଦନ ଶତକଡା ୨୦ ଭାଗ ବୃଦ୍ଧି ପାଇବ ବୋଲି ବୈଠକରେ ଦର୍ଶାଇଦିଆ ଯାଇଥିଲା । ଚିନାବାଦାମ ମଞ୍ଜି ଉତ୍ପାଦନରେ ଓଡିଶା ଆତ୍ମନିର୍ଭରଶୀଳ ହୋଇପାରିଛି ।

ରାଜ୍ୟରେ ଡାଲି ଉତ୍ପାଦନ ବୃଦ୍ଧି କରିବାପାଇଁ ଉନ୍ନତ କିସମର ମୁଗ ଓ ବିରି ବିହନ ଉତ୍ପାଦନ ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଥିଲେ । ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ୩୫ ଟି କିସମର ଓ କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ୪୯ ଟି ନୂଆ କିସମର ଅଧିକ ଉତ୍ପାଦନକ୍ଷମ ଧାନବିହନ ଉଦ୍ଭାବନ କରିବାରେ ସକ୍ଷମ ହୋଇଥିଲେ ମଧ୍ୟ ଡାଲି କ୍ଷେତ୍ରରେ ଏ ପ୍ରକାର ସଫଳତା ହାସଲ କରିପାରି ନଥିବାରୁ ଏଦିଗରେ ଅଧିକ ଉଦ୍ୟମ କରିବାପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ଓଡିଶାର ଚାଷୀମାନଙ୍କୁ ଅଧିକ ଗହମ ଚାଷ କରିବାପାଇଁ ପ୍ରବର୍ତ୍ତାଇବାକୁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ଆସନ୍ତାବର୍ଷ ପାଇଁ ୫ ହଜାର କ୍ୱିଣ୍ଟାଲ ଗହମ ବୃଦ୍ଧି କରିବାପାଇଁ ବୈଠକରେ ମତପ୍ରକାଶ ପାଇଥିଲା ।

ଉତ୍କୃଷ୍ଟ କପାଚାଷ ପାଇଁ କଳାହାଣ୍ଡି, ବଲାଙ୍ଗୀର, କୋରାପୁଟ ଜିଲ୍ଲାର ନବରଙ୍ଗପୁର, ଉମରକୋଟ ଓ ରାୟଗଡାର ମୃତ୍ତିକା ଓ ଜଳବାୟୁ ଅନୁକୂଳ ହୋଇଥିବାରୁ ଏହି ଅଞ୍ଚଳରେ ବ୍ୟାପକ କପାଚାଷ କରିବାପାଇଁ ଲକ୍ଷ୍ୟ ରଖାଯାଇଛି । ଗଲାବର୍ଷ ଏ ଅଞ୍ଚଳରେ ୯ ହଜାର ହେକ୍ଟର ଜମିରେ କପାଚାଷ କରାଯାଇଥିବାବେଳେ ଚଳିତ ବର୍ଷ ଏହା ୧୬,୫୦୦ ହେକ୍ଟରକୁ ବୃଦ୍ଧି ପାଇଛି । ଓଡିଶାର କପା ସାରା ଦେଶରେ ସର୍ବୋତ୍କୃଷ୍ଟ ବୋଲି ବିଶେଷଜ୍ଞମାନେ ମତ ଦେଇଥିବାର କୃଷି ସଚିବ ପ୍ରକାଶ କରିଥିଲେ । ଏହି ଅଞ୍ଚଳରେ ସୋୟାବିନ ଚାଷ କରିବା ପାଇଁ ମଧ୍ୟ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ରାଜ୍ୟର ଚାହିଦା ମୁତାବକ ଆଳୁ ଓ ପିଆଜ ଉତ୍ପାଦନ କରାଯାଇ ୧୯୯୯ ମସିହା ଭିତରେ ବଜାରରେ ଆଳୁ ଓ ପିଆଜର ଅଭାବ ମେଣ୍ଟାଇବା ପାଇଁ ମୁଖ୍ୟମନ୍ତ୍ରୀ ବୈଠକରେ ଗୁରୁତ୍ୱ ଆରୋପ କରିଥିଲେ । ଚଳିତବର୍ଷ ରାଜ୍ୟରେ ଚାଷୀମାନଙ୍କୁ ୨୦,୦୦୦ କ୍ୱିଣ୍ଟାଲ ଆଳୁ ବିହନ ଯୋଗାଇ ଦେବାପାଇଁ ଲକ୍ଷ୍ୟ ରଖାଯାଇଥିଲାବେଳେ ୧୮,୬୦୦ କ୍ୱିଣ୍ଟାଲ ଆଳୁ ବିହନ ଚାଷୀଙ୍କ ପାଖରେ ପହଞ୍ଚିଛି । ପିଆଜକୁ ଅଧିକ ଦିନ ପର୍ଯ୍ୟନ୍ତ ସାଇତି ରଖିବାର ପ୍ରଣାଳୀ ସଂପର୍କରେ ଚାଷୀମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ ଦେବାପାଇଁ କୃଷି ବିଭାଗ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଜରିଆରେ ପଦକ୍ଷେପ ନେଉଛନ୍ତି ବୋଲି କୃଷି ସଚିବ ବୈଠକରେ ଉଲ୍ଲେଖ କରିଥିଲେ ।

ରାଜ୍ୟରେ ସବୁ ସମୟରେ ବନ୍ଧାକୋବି ଓ ବିଲାତି ବାଇଗଣ ମିଳିବାପାଇଁ ବ୍ୟବସ୍ଥା କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ

ଦେଇଥିଲେ । କୋରାପୁଟ, ଫୁଲବାଣୀ ଓ କେଉଁଝର ଜିଲ୍ଲାର ୧୫ ଶହ ହେକ୍ଟର ଜମିରେ ବନ୍ଧାକୋବି, ବିଲାତି ବାଇଗଣ, ମୂଳା ଓ ବିନ୍ ଚାଷ କରିବାପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଛି ବୋଲି କୃଷି ସଚିବ ଦର୍ଶାଇଥିଲେ । ସେ କହିଥିଲେ ଯେ ପ୍ରତି ପଞ୍ଚାୟତରେ ଆଇ.ଆର.ଡି.ପି. ଯୋଜନା ମାଧ୍ୟମରେ ଉନ୍ନତ ଧରଣର ପନିପରିବା ଚାରା ଉତ୍ପାଦନ କରିବା ପାଇଁ ୧୦ ହଜାର ଟଙ୍କା ଲେଖାଏଁ ଦିଆଯାଇ ନର୍ସରୀମାନ ସୃଷ୍ଟି କରାଯାଇଛି । ଚଳିତବର୍ଷ ରାଜ୍ୟରେ ୮୨ କୁଇଣ୍ଟାଲ ହାଇବ୍ରିଡ ପନିପରିବା ମଞ୍ଜିର ଚାରା ଉତ୍ପାଦନ କରାଯାଇଛି । ବ୍ୟାପକ ଫଳଚାଷ ଦ୍ୱାରା ଫଳ ଉତ୍ପାଦନ ବୃଦ୍ଧି କରିବାପାଇଁ ଯୋଜନା ପ୍ରସ୍ତୁତ କରିବା ପାଇଁ ବୈଠକରେ ଆଲୋଚନା ହୋଇଥିଲା ।

ସିଞ୍ଚନ ଜଳସେଚନ କାର୍ଯ୍ୟକ୍ରମ ରାଜ୍ୟର ଚାଷୀମାନଙ୍କ ଭିତରେ ଆଦୃତ ହୋଇଥିବାରୁ ଏବଂ ଏହାଦ୍ୱାରା ଫସଲ ଉତ୍ପାଦନ ପରିମାଣ ଆଶାତୀତ ଭାବେ ବୃଦ୍ଧି ପାଇବା ସଂଭାବନା ଥିବାରୁ ରାଜ୍ୟରେ ଏହି କାର୍ଯ୍ୟକ୍ରମର ବ୍ୟାପକ କାର୍ଯ୍ୟକାରିତା ପାଇଁ କେନ୍ଦ୍ର ସରକାରଙ୍କ ନିକଟକୁ ୧୦ କୋଟି ଟଙ୍କାର ଏକ ପ୍ରସ୍ତାବ ପଠାଇବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ନିର୍ଦ୍ଦେଶ ଦେଇଥିଲେ।

ଏହି ବୈଠକରେ କୃଷି ଶାସନ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ, କୃଷି ନିର୍ଦ୍ଦେଶକ ଡଃ ତାରାଦତ୍ତ ଏବଂ କୃଷି ଓ ଜଳସେଚନ ବିଭାଗର ଉଚ୍ଚପଦସ୍ଥ ଅଫିସରମାନେ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ରାଜ୍ୟ ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକ

ମରୁଡି ଅଞ୍ଚଳରେ ରବି କାର୍ଯ୍ୟକ୍ରମ ଓ ପାନୀୟ ଜଳ ଯୋଗାଣ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଗତ ଜାନୁଆରୀ ୧୮ ତାରିଖରେ ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକରେ ପ୍ରକାଶ କରିଛନ୍ତି ।

ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟମନ୍ତ୍ରୀ କହିଲେ ଯେ ମରୁଡି ଅଞ୍ଚଳରେ ପିଇବା ପାଣିର ଦୁରବସ୍ଥାକୁ ଦୂର କରିବାପାଇଁ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ପ୍ରତ୍ୟେକ ହରିଜନ ବସ୍ତିରେ ଓ ମଧ୍ୟାହ୍ନ ଭୋଜନ ଚାଲୁଥିବା ସ୍କୁଲମାନଙ୍କରେ ନଳକୂପ ବସାଯିବ ଏବଂ ଜିଲ୍ଲାପାଳମାନଙ୍କ ସୁପାରିଶ କ୍ରମେ ଅଧିକ ନଳକୂପ ଯୋଗାଇ ଦେବାପାଇଁ ମଧ୍ୟ ବ୍ୟବସ୍ଥା କରାଯିବ ।

ଜବାହରରୋଜଗାର ଯୋଜନାରେ ଓ ନିଶ୍ଚିତ ନିଯୁକ୍ତି ଯୋଜନାରେ ରାଜ୍ୟ ସରକାରଙ୍କ ପାଖରେ ଥିବା ପାଣ୍ଠିର ଶତକଡା ୬୦ ଭାଗ ଶ୍ରମଭିତ୍ତିକ କାର୍ଯ୍ୟକ୍ରମରେ ଖର୍ଚ୍ଚ କରାଯାଇ ବହୁ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯିବ । ଉପର ଇନ୍ଦ୍ରାବତୀ ଯୋଜନା, ଲୋୟର ଇନ୍ଦ୍ର, ତଳସୁକତେଲ ଓ ଉପରଜୋଙ୍ଗ ଆଦି ବଡ ବଡ ଜଳସେଚିତ ଯୋଜନା କାର୍ଯ୍ୟକାରୀ ହେବା ଫଳରେ କଳାହାଣ୍ଡି, ନୂଆପଡା ଓ ବଲାଙ୍ଗୀର ପରି ଚିର ମରୁଡିଗ୍ରସ୍ତ ଜିଲ୍ଲାରେ ଜଳସେଚନ ସମସ୍ୟାର ସମାଧାନ ଅଚିରେ ସମ୍ଭବ ହେବ ବୋଲି ସେ ଆଶା ପ୍ରକାଶ କରିଥିଲେ । କୁଜାଗଡ ସବଡିଭିଜନ, ନରଲା, ଖଡିଆଳ ଓ ବଲାଙ୍ଗୀରର ଅଧିକ ମରୁଡିଗ୍ରସ୍ତ ଅଞ୍ଚଳରେ ଏବଂ ମହାନଦୀ ପ୍ରବାହିତ ଅଞ୍ଚଳରେ ଜଳସେଚନ ସୁବ୍ୟବସ୍ଥା କରିବାପାଇଁ ଯୋଜନା କରାଯାଉଛି ବୋଲି ସେ ଉଲ୍ଲେଖ କରିଥିଲେ । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ବର୍ଷା ଦିନେ ନଈରେ ପାଣିକୁ ସଂରକ୍ଷିତ କରି ଏବଂ ଗଡ଼ରୁ ପାଣି ଉଠାଇ ଜମିକୁ ଜଳ ଯୋଗାଇ ଦିଆଯିବ ଏବଂ ଆପିକଲର ପୂର୍ଣ୍ଣାଙ୍ଗ ରିପୋର୍ଟ ମିଳିଲେ ରାଜ୍ୟର ୫୦ ହଜାର ଏକର ଜମିରେ ପାଣି ମଡାଇବାର ଯୋଜନା କାର୍ଯ୍ୟକାରୀ ହେବ ।

ଆଗାମୀ ରବି ଋତୁରେ ଫସଲ ଉତ୍ପାଦନ ବୃଦ୍ଧି କରାଯାଇ କ୍ଷତିର ଭରଣା କରିବାପାଇଁ ବ୍ୟାପକ ଉଦ୍ୟମ କରାଯାଉଛି ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଚାଷୀମାନେ ଧାନଚାଷରେ ବେଶି ମନନିବେଶ ନ କରି ଅନ୍ୟାନ୍ୟ ଲାଭଜନକ ଫସଲ ପାଇଁ କାର୍ଯ୍ୟ କରିବା ଉଚିତ । ଏବର୍ଷ ରବି ପାଇଁ ପ୍ରାକୃତିକ ବିପର୍ଯ୍ୟୟ ପାଣ୍ଠିରୁ ୫ କୋଟି ଟଙ୍କା ଦିଆଯାଇଛି । ଏଥିରେ ୪୫ ହଜାର କୁଇଣ୍ଟାଲ ଉନ୍ନତ କିସମର ଚିନାବାଦାମ ସମେତ ଉନ୍ନତ କିସମର ହାଇବ୍ରିଡ୍ ଧାନ ବିହନ ଓ ପନିପରିବା ମଞ୍ଜି ଯୋଗାଇ ଦିଆଯାଉଛି ।

ସାଧାରଣ ବଣ୍ଟନ ବ୍ୟବସ୍ଥା ସଂପର୍କରେ ମୁଖ୍ୟମନ୍ତ୍ରୀ କହିଲେ ଯେ ଆମ ପାଖରେ ଯଥେଷ୍ଟ ଖାଦ୍ୟଶସ୍ୟ ମହଜୁଦ ଅଛି ଏବଂ ଭାରତ ସରକାର ମଧ୍ୟ ଯେତେ ଦରକାର ସେତେ ଖାଦ୍ୟଶସ୍ୟ ଦେଇପାରିବେ । ତେଣୁ ବଜାରରେ ଚାଉଳର ମୂଲ୍ୟ ବଢ଼ିଯିବାର କୌଣସି ପ୍ରଶ୍ନ ଉଠୁନାହିଁ ବୋଲି ସେ କହିଥିଲେ ।

ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ କହିଲେ ଯେ, ଚିର ମରୁଡିଗ୍ରସ୍ତ କଳାହାଣ୍ଡି ଓ ନୂଆପଡା ଜିଲ୍ଲାରେ ଜଳସେଚନ ସମସ୍ୟା ଶୀଘ୍ର ଦୂର ହେବ । ଆସନ୍ତା ବର୍ଷ ବିଶ୍ୱବ୍ୟାଙ୍କ ସହାୟତାରେ ୧୫୦ କୋଟି ଟଙ୍କାର ଜଳସେଚନ ଯୋଜନା କାର୍ଯ୍ୟକାରୀ ହେବ ବୋଲି ସେ ପ୍ରକାଶ କରିଥିଲେ ।

ପ୍ରାରମ୍ଭରେ ରାଜସ୍ୱମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା କହିଥିଲେ ଯେ, ଜିଲ୍ଲାପାଳମାନଙ୍କଠାରୁ ପ୍ରାପ୍ତ ବିବରଣୀ ଅନୁଯାୟୀ ୨୫୭ ଟି ବ୍ଲକର ୩୫୧୨ ଟି ଓ ୨୨ ଟି ସହରାଞ୍ଚଳ ସମେତ ୨୨୦୮୧ ଟି ଗ୍ରାମରେ ଶତକଡା ୫୦ ରୁ ୭୫ ଭାଗ ଫସଲ ହାନୀ ଘଟିଛି । କେନ୍ଦ୍ର ସରକାର ମରୁଡିର ଭୟାବହତା ଉପଲବ୍ଧି କରୁଥିଲେ ମଧ୍ୟ ମାତ୍ର ୧୩ କୋଟି ଟଙ୍କା ସାହାଯ୍ୟ ମଞ୍ଜୁର କରିଛନ୍ତି। ରାଜ୍ୟ ସରକାରଙ୍କ ପକ୍ଷରୁ ମରୁଡି ପରିସ୍ଥିତିର ମୁକାବିଲା କରିବାପାଇଁ ୫୨୨ କୋଟି ୭୦ ଲକ୍ଷ ଟଙ୍କାର କେନ୍ଦ୍ରୀୟ ଅବଦାନ ପାଇଁ ସ୍ମାରକପତ୍ର ଦିଆଯାଇଥିଲା । ଖରିଫ ଫସଲ ଲାଗି କ୍ରସ ବନ୍ଧ, ଉଠାଜଳସେଚନ ପଏଣ୍ଟର ମରାମତି, ରବି କାର୍ଯ୍ୟକ୍ରମ, ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ଜରିଆରେ କର୍ମଯୋଗାଣ ଆଦି ଉପରେ ସରକାର ଗୁରୁତ୍ୱ ଦେଉଛନ୍ତି ବୋଲି ସେ କହିଥିଲେ ।

ଏହି ବୈଠକରେ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ଅମର ପ୍ରଧାନ, ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ରାଉତ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ ଶ୍ରୀ ପ୍ରକାଶ ଚନ୍ଦ୍ର ବେହେରା, ବିଧାୟକ ସର୍ବଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଘାସିରାମ ମାଝୀ, ଯୁଧିଷ୍ଠିର ସାମନ୍ତରାୟ, ରାମଚନ୍ଦ୍ର ପ୍ରଧାନ, ରବୀନ୍ଦ୍ର ବେହେରା, ପୂର୍ବତନ ଏମ୍.ପି. ଶିବାଜୀ ପଟ୍ଟନାୟକ, ରାଜସ୍ୱ ପର୍ଷଦ ସଭ୍ୟ ସହଦେବ ସାହୁ, ସ୍ପେଶାଲ ରିଲିଫ କମିଶନରଶ୍ରୀ ସାନୁଜିତ ଘୋଷଙ୍କ ସମେତ ବହୁ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

# ସମ୍ବାଦ ପରିକ୍ରମା

## ଭାରତ ଇସ୍ରାଏଲ ସହଯୋଗ ସମନ୍ୱିତ ଗ୍ରାମ୍ୟ ଆଞ୍ଚଳିକ ଉନ୍ନୟନ ଯୋଜନା ପ୍ରଶିକ୍ଷଣ ପାଠ୍ୟକ୍ରମ

ଗତ ଜାନୁଆରୀ ୨୩ ତାରିଖରେ କଳିଙ୍ଗ ଅଶୋକ ହୋଟେଲଠାରେ ଇସ୍ରାଏଲ ଓ ଭାରତ ସରକାରଙ୍କ ମିଳିତ ସହଯୋଗରେ ଇସ୍ରାଏଲର ଡ଼େଭଲପ୍‌ମେଣ୍ଟ ଷ୍ଟଡ଼ି ସେଣ୍ଟର ଓ ଓଡ଼ିଶା ସରକାରଙ୍କ ଦ୍ୱାରା ଆୟୋଜିତ ସମନ୍ୱିତ ଗ୍ରାମ୍ୟ ଆଞ୍ଚଳିକ ବିକାଶ ଯୋଜନା ସଂକ୍ରାନ୍ତୀୟ ସ୍ନାତକୋତ୍ତର ବ୍ୟାବହାରିକ ପ୍ରଶିକ୍ଷଣ ପାଠ୍ୟକ୍ରମର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଅଛି ।

ଏହି ଉପଲକ୍ଷେ ଆୟୋଜିତ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ରାଜ୍ୟ କୃଷି ଉତ୍ପାଦନ କମିଶନର ଶ୍ରୀ ସୋମନାଥ ବନ୍ଦୋପାଧ୍ୟାୟ କହିଲେ ଯେ ମହିଳାମାନଙ୍କ ଅବସ୍ଥାରେ ଉନ୍ନତି ବିନା ଗ୍ରାମାଞ୍ଚଳର ବିକାଶ ଓ ଉତ୍ପାଦନ ବୃଦ୍ଧି ଅସମ୍ଭବ । ଗ୍ରାମାଞ୍ଚଳ ବିକାଶର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ଗାଁ ଗହଳିରେ ବାସ କରୁଥିବା ଲୋକମାନଙ୍କୁ ଗ୍ରାମାଞ୍ଚଳର ଉନ୍ନୟନ କାର୍ଯ୍ୟକ୍ରମରେ ଜଡ଼ିତ କରାଇବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଦେଶାତ୍ମବୋଧ, ଜାତୀୟତାବୋଧ ଓ ସମାଜ ପ୍ରତି ଅଙ୍ଗୀକାରବଦ୍ଧତା ଜାଗ୍ରତ କରାଇବା । ସେ କହିଲେ ଯେ ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ରାଜ୍ୟ ଗ୍ରାମାଞ୍ଚଳର ସମସ୍ୟା ପ୍ରତ୍ୟେକଠାରୁ ଭିନ୍ନ । ତେଣୁ ସମସ୍ୟାଗୁଡ଼ିକର ଚିହ୍ନଟ କରି ନିର୍ଦ୍ଦିଷ୍ଟ ସମାଜର ସାମାଜିକ-ଆର୍ଥିକ ପରିବେଶ ଓ ପରିସ୍ଥିତିକୁ ଦୃଷ୍ଟିରେ ରଖି ସମାଧାନ ପନ୍ଥା ନିରୂପଣ କରିବାକୁ ପଡ଼ିବ ।

କୃଷି ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ଉଦ୍‌ବୋଧନ ଦେଇ ଇସ୍ରାଏଲ ଦୂତାବାସର କନସଲ ମିଷ୍ଟର ଉଜି ଓ୍ୱେଲିଶ କହିଲେ ଯେ ଉପଯୁକ୍ତ ଯୋଜନା ଅଭାବରୁ ଭାରତକୁ ବିଶ୍ୱବ୍ୟାଙ୍କର ସହାୟତା ସନ୍ତୋଷଜନକ ହୋଇପାରୁ ନାହିଁ । ସେ କହିଲେ ଯେ ଜୀବିକା ଅନ୍ୱେଷଣରେ ଗ୍ରାମାଞ୍ଚଳରୁ ଲୋକମାନେ ବହୁ ସଂଖ୍ୟାରେ ସହରାଞ୍ଚଳକୁ ଚାଲି ଆସୁଛନ୍ତି । ତଜ୍ଜନିତ ସମସ୍ୟା ସମାଧାନର ଏକମାତ୍ର ଉପାୟ ହେଲା ଗ୍ରାମାଞ୍ଚଳର ଯୋଜନାବଦ୍ଧ ବିକାଶ କରାଇବା ।

ଡ଼େଭଲପ୍‌ମେଣ୍ଟ ଷ୍ଟଡ଼ି ସେଣ୍ଟରର ନିର୍ଦ୍ଦେଶକ ମିଷ୍ଟର ମାଇକେଲ ଗୋରେଲିକ ଏହି ପ୍ରଶିକ୍ଷଣ ପାଠ୍ୟକ୍ରମ ସଂପର୍କରେ ସୂଚନା ଦେଇଥିଲେ । ରାଜ୍ୟ କୃଷି ବିଭାଗର କମିଶନର ଶ୍ରୀ ବିଜୟ କୁମାର ପଟ୍ଟନାୟକ ତାଙ୍କର ସ୍ୱାଗତ ଭାଷଣରେ ସରକାରଙ୍କ ନୂତନ କୃଷିନୀତି ପରିପ୍ରେକ୍ଷୀରେ ଏହି ପାଠ୍ୟକ୍ରମର ଆବଶ୍ୟକତା ସଂପର୍କରେ ସୂଚନା ଦେଇଥିଲେ । କୃଷି ବିଭାଗର ଅତିରିକ୍ତ ଶାସନ ସଚିବ ଶ୍ରୀ ସୁରସେନ ଜେନା ଧନ୍ୟବାଦ ଅର୍ପଣ କରିଥିଲେ ।

୧୯୯୫ ରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଇସ୍ରାଏଲ ଗସ୍ତ ପରେ ଗତ ମାର୍ଚ୍ଚ ୧୯୯୬ ରେ ରାଜ୍ୟ କୃଷି ବିଭାଗର ଶାସନ ସଚିବ ଓ ଇସ୍ରାଏଲ ଦୂତାବାସ ମଧ୍ୟରେ ସ୍ୱାକ୍ଷରିତ ଚୁକ୍ତି ଅନୁଯାୟୀ ରାଜ୍ୟ ସରକାର କୃଷି ମୃତ୍ତିକା ସଂରକ୍ଷଣ ଓ ଉଦ୍ୟାନ ବିଭାଗ, କୃଷି ବିଶ୍ୱବିଦ୍ୟାଳୟ ତଥା ରାଜ୍ୟ ପ୍ରଶାସନିକ ସେବାର ଆଠଜଣ ଅଫିସରଙ୍କୁ ଏହି ପ୍ରଶିକ୍ଷଣ ନିମନ୍ତେ ପଠାଇଛନ୍ତି ।

## ରାଜ୍ୟରେ ୧ ଲକ୍ଷ ୧୦ ହଜାର କୋଟି ଟଙ୍କାର ବିଦେଶୀ ପୁଞ୍ଜି ବିନିଯୋଗ କରାଯିବ

***ଉପମୁଖ୍ୟମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳ***

ବେକାର ଯୁବକ ମାନଙ୍କ କର୍ମନିଯୁକ୍ତି ପାଇଁ ୧ ଲକ୍ଷ ୧୦ ହଜାର କୋଟିରୁ ଉର୍ଦ୍ଧ୍ୱ ବିଦେଶୀ ପୁଞ୍ଜି ରାଜ୍ୟରେ ବିନିଯୋଗ କରାଯାଇ ବିଭିନ୍ନ ବୃହତ୍ ଶିଳ୍ପମାନ ସ୍ଥାପନ କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ପ୍ରକ୍ରିୟା ଆରମ୍ଭ ହୋଇଛି ବୋଲି ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ କଟକ ଠାରେ ଅନୁଷ୍ଠିତ ସାଧାରଣତନ୍ତ୍ର ଦିବସ ଉତ୍ସବରେ ପ୍ରକାଶ କରିଛନ୍ତି ।

କଟକସ୍ଥ ଐତିହାସିକ ବାରବାଟି ଷ୍ଟାଡ଼ିୟମ ଠାରେ ୪୮ ତମ ସାଧାରଣତନ୍ତ୍ର ଦିବସ ଉତ୍ସବରେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ

ଜାତୀୟ ପତାକା ଉତ୍ତୋଳନ କରି ମିଳିତ ପ୍ୟାରେଡ଼ରେ ଅଭିବାଦନ ଗ୍ରହଣ କରିଥିଲେ । ଏହି ଅବସରରେ ଶ୍ରୀ ବିଶ୍ୱାଳ ଉପସ୍ଥିତ ଜନତାଙ୍କୁ ଉଦ୍‌ବୋଧନ ଦେଇ କହିଲେ ଯେ ଆଜିର ଏହି ପବିତ୍ର ତଥା ଐତିହାସିକ ଦିବସରେ ସମ୍ବିଧାନ ପ୍ରଣୟନ କରି ଭାରତକୁ ଏକ ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ର ରୂପେ ଘୋଷଣା କରି ପ୍ରତ୍ୟେକଙ୍କୁ ସ୍ୱାଧୀନତା, ନ୍ୟାୟ ଏବଂ ସମାନତା ଦିଆ ଯାଇଅଛି । ବିଶ୍ୱର ସର୍ବବୃହତ ଗଣତନ୍ତ୍ର ରାଷ୍ଟ୍ର ଆଜି ସୁଦୃଢ଼ ହୋଇ ପାରିଛି ବୋଲି ଶ୍ରୀ ବିଶ୍ୱାଳ ପ୍ରକାଶ କରିବା ସହିତ ସ୍ୱାଧୀନତା ପ୍ରାପ୍ତିପରେ ଆମେ ବହୁ କ୍ଷେତ୍ରରେ ସଫଳତା ହାସଲ କରି ଥିଲେ ମଧ୍ୟ କ୍ରମ ବର୍ଦ୍ଧିଷ୍ଣୁ ଜନସଂଖ୍ୟା ଯୋଗୁଁ ଆଶାନୁରୂପ ସଫଳ ସମସ୍ତଙ୍କୁ ମିଳିପାରିନାହିଁ ବୋଲି ଉଲ୍ଲେଖ କରିଥିଲେ । ଏଣୁ ଆଜିଭଳି ଏକ ପବିତ୍ର ଦିବସରେ ଆଗାମୀ ଦିନର କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ଦୃଢ଼ ସଂକଳ୍ପ ନେବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । କୃଷି ମାଧ୍ୟମରେ ସର୍ବାଧିକ କର୍ମନିଯୁକ୍ତି ସୃଷ୍ଟି ହେଉଥିବାରୁ ଏହାକୁ ଶିଳ୍ପର ମାନ୍ୟତା ଦିଆଯାଇ ଅଛି ଓ ଏହାର ବିକାଶ ପାଇଁ ଜଳସେଚନ ବ୍ୟବସ୍ଥାକୁ ୫୦ ପ୍ରତିଶତକୁ ବୃଦ୍ଧି କରିବା ପାଇଁ ସରକାର ଅଙ୍ଗୀକାରବଦ୍ଧ ବୋଲି ଶ୍ରୀ ବିଶ୍ୱାଳ ପ୍ରକାଶ କରିଥିଲେ । ଉତ୍କଟ ବେକାରୀ ସମସ୍ୟାର ସମାଧାନ ପାଇଁ ବିଦେଶୀ ଶିଳ୍ପୋଦ୍ୟୋଗୀମାନଙ୍କ ସହାୟତାରେ ବିପୁଳ ପରିମାଣରେ ପୁଞ୍ଜି ବିନିଯୋଗ ପାଇଁ ଉଦ୍ୟମ ଆରମ୍ଭ ହୋଇଛି ବୋଲି ସେ ଉଲ୍ଲେଖ କରିଥିଲେ । ସଂପ୍ରତି ସରକାରଙ୍କ ପକ୍ଷରୁ ଆରମ୍ଭ କରାଯାଇଥିବା ବିଭିନ୍ନ ଉନ୍ନୟନମୂଳକ ତଥା ଜନହିତକର କାର୍ଯ୍ୟକ୍ରମକୁ ସଫଳ କରିବାପାଇଁ ଜନସାଧାରଣଙ୍କ ସକ୍ରିୟ ସହଯୋଗ ପାଇଁ ସେ ଆହ୍ୱାନ ଦେଇଥିଲେ ।

## ପାଇକ ବୀର ବକ୍ସି ଜଗବନ୍ଧୁଙ୍କ ରାଜ୍ୟସ୍ତରୀୟ ଶ୍ରାଦ୍ଧୋତ୍ସବ

ସୂଚନା ଓ ଲୋକସଂପର୍କ ବିଭାଗ ଆନୁକୂଲ୍ୟରେ ମହାନ ପାଇକ ବୀର ବକ୍‌ସି ଜଗବନ୍ଧୁ ବିଦ୍ୟାଧରଙ୍କ ଶ୍ରାଦ୍ଧ ଦିବସ ଗତ ଜାନୁଆରୀ ୨୪ ତାରିଖରେ ସ୍ଥାନୀୟ ସୂଚନା ଭବନଠାରେ ପାଳିତ ହୋଇଯାଇଛି ।

ଏଥିରେ ମୁଖ୍ୟ ଅତିଥି ଭାବେ ଶିକ୍ଷାବିତ୍ ଶ୍ରୀ ଲକ୍ଷ୍ମୀନାରାୟଣ ରାୟ ସିଂ ଓଡ଼ିଶାର ଶେଷ ସ୍ୱାଧୀନତା ବଜାୟ ରଖିବା ଦିଗରେ ଜଗବନ୍ଧୁଙ୍କର ଅବଦାନର ଅବତାରଣା କରି ବୀରଭୂମି ଏହି ଓଡ଼ିଶାର ଐତିହ୍ୟ, ପରମ୍ପରା ବିଶ୍ଳେଷଣ କରିଥିଲେ । ଅତୀତରେ ଓଡ଼ିଶା ସାରା ଭାରତବର୍ଷରେ ଆଦର୍ଶ ପ୍ରତିଷ୍ଠା କରିବା ଦିଗରେ ଯେଉଁ ବୀର ସନ୍ତାନମାନଙ୍କୁ ଜନ୍ମ ଦେଇ ଅତିରେ ଅକାଳରେ ହରାଇ ଓଡ଼ିଶାକୁ ଘନଅନ୍ଧକାର ମଧ୍ୟକୁ ନେଇ ଯାଇଥିଲେ ସେ ତା'ର ଅବତାରଣା କରିଥିଲେ । ଏହି ଭୂମିରେ ବାଜିରାଉତଙ୍କ ଠାରୁ ଆରମ୍ଭ କରି ମହାନ୍ ଶିଳ୍ପୀ ଧର୍ମପଦ, ଚାଖି ଖୁଣ୍ଟିଆ, ଜୟୀ ରାଜଗୁରୁ ସର୍ବୋପରି ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ପରି ବୀରମାନଙ୍କୁ ରକ୍ଷା କରି ପାରିନାହିଁ, ଯେଉଁ ପାଇକମାନଙ୍କର ବୀରତ୍ୱ, ଶୌର୍ଯ୍ୟରେ ଭୟଭୀତ ହୋଇ ଦୁର୍ଦ୍ଧର୍ଷ ବ୍ରିଟିଶ ବାହିନୀ ସୈନ୍ୟବାହିନୀରେ ମିଶାଇବା ପାଇଁ ଭୟ କରୁଥିଲା, ଯେଉଁଥିପାଇଁ ସୈନ୍ୟବାହିନୀରେ ଓଡ଼ିଆ ରେଜିମେଣ୍ଟ ଆଜି ନାହିଁ । ସ୍ୱାଧୀନତାର ଦୀର୍ଘ ଦିନ ପରେ ଆଜି ଏହି ପାଇକ ମାଟି ଖୋର୍ଦ୍ଧାରେ ସ୍ଥାପନ କରାଯାଇଥିବା ତୃତୀୟ ସମରକଳା ଏକାଡ଼େମୀକୁ ବନ୍ଦ କରାଯାଇ ଖୋର୍ଦ୍ଧଗଡ଼ ପ୍ରତି ଘୋର ଅବିଚାର କରାଯାଇଛି ବୋଲି ଦର୍ଶାଇଥିଲେ । ଓଡ଼ିଶାର ସ୍ୱାଧୀନତା ରକ୍ଷା ଦିଗରେ ଯେଉଁ ବୀରମାନଙ୍କର ଆତ୍ମବଳି ରହିଛି ସେହିମାନଙ୍କର ଏକ ସ୍ମୃତିସ୍ତମ୍ଭ ସ୍ଥାପନ ସହିତ ଖୋର୍ଦ୍ଧାରେ ସ୍ଥାପନ କରାଯାଇଥିବା ତୃତୀୟ ସମରକଳା ଏକାଡ଼େମୀକୁ ପୁଣି ଚାଲୁ କରିବା ପାଇଁ ସେ ସରକାରଙ୍କ ନିକଟରେ ଦାବି ଉପସ୍ଥାପନ କରିଥିଲେ ।

ଏଥିରେ ଅଧ୍ୟକ୍ଷତା କରି ସୂଚନା ଓ ଲୋକ ସଂପର୍କ ନିର୍ଦ୍ଦେଶକ ଶ୍ରୀ ସନ୍ତୋଷ କୁମାର ମିଶ୍ର ଓଡ଼ିଆ ଜାତିର କିମ୍ବଦନ୍ତୀ ପୁରୁଷ ବକ୍ସି ଜଗବନ୍ଧୁ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ଚଳାଇ ଯେପରି ବନ୍ଦୀ ହୋଇ ମୃତ୍ୟୁ ବରଣ କରିଥିଲେ ତାହା ଚିରଦିନ ପାଇଁ ଏହି ଜାତିର ବୀରତ୍ୱ ଓ ସ୍ୱାଭିମାନର ସ୍ୱାକ୍ଷର ବହନ କରି ରହିଥିବ ବୋଲି କହିଥିଲେ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି କରିବା ସହିତ ପୂଜ୍ୟପୂଜା କରିବା ପାଇଁ ଏହି ପାଇକ ବୀରଙ୍କ ଜୀବନାଦର୍ଶରୁ ଶିକ୍ଷାଲାଭ କରି ଜାତି ଏବଂ ଦେଶ ଗଠନ ଦିଗରେ ଆଗେଇ ଆସିବାକୁ ଉପସ୍ଥିତ ଦର୍ଶକମାନଙ୍କୁ ଅନୁରୋଧ କରିଥିଲେ । ଆଜିର ସମାଜରେ ବ୍ୟକ୍ତି ବିଶେଷଙ୍କର ଫଟୋଚିତ୍ର କିମ୍ବା ମୂର୍ତ୍ତିକୁ ପୂଜା କରିବା ଅପେକ୍ଷା ସେମାନଙ୍କର ଆଦର୍ଶକୁ ପୂଜା କରି ସେହି ଦିଗରେ ନିଜକୁ ଗଢ଼ି ତୋଳିଲେ ତାହା ହେବ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ବୋଲି କହିଥିଲେ ।

ବିଭାଗୀୟ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ପ୍ରାଣକୃଷ୍ଣ ବେହେରା ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ । ଶହୀଦ ବୀରଙ୍କ ଜୀବନୀ ଉପରେ ଆଧାରିତ କୃତୀ ପ୍ରତିଯୋଗୀମାନଙ୍କୁ ମୁଖ୍ୟ ଅତିଥି ପ୍ରମାଣପତ୍ର ଓ ପୁରସ୍କାର ପ୍ରଦାନ କରିଥିଲେ । ବୈଦ୍ୟନାଥ ସଂଗୀତ ମଣ୍ଡଳୀ ଆନୁକୂଲ୍ୟରେ ନିରଞ୍ଜନ ରଥ ଓ ସାଥିମାନଙ୍କ ଦ୍ୱାରା ସ୍ୱାଗତ ସଂଗୀତ ପରିବେଷଣ କରାଯାଇଥିଲା ।

## ପୁରୀ-କୋଣାର୍କ ବେଳାଭୂମି ରେଳପଥ ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଉ

***ପରିବହନ ମନ୍ତ୍ରୀ ଶ୍ରୀ ଜେନା***

କୋଣାର୍କ ଓ ପୁରୀର ବେଳାଭୂମିରେ ଉଭୟ ପର୍ଯ୍ୟଟନ କେନ୍ଦ୍ରକୁ ସଂଯୋଗକାରୀ ଏକ ସରୁଆ ରେଳପଥ ନିର୍ମାଣ କରି

ସେଥିରେ ହିମାଚଳ ପ୍ରଦେଶର 'ସିମଳା' ପର୍ଯ୍ୟଟନ କେନ୍ଦ୍ରକୁ ଯାତାୟତ କରୁଥିବା ଭଳି ଏକ ରେଳ ଚଳାଚଳ କରାଯିବା ଲାଗି ୧୯୯୨-୯୩ ମସିହାରେ ରେଳ ମନ୍ତ୍ରଣାଳୟ ମଂଜୁରୀ ପ୍ରଦାନ କରିଥିଲେ । ଏହି ରେଳପଥ ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯିବା ଲାଗି ପରିବହନମନ୍ତ୍ରୀ ଶ୍ରୀ କାହ୍ନୁ ଚରଣ ଲେଙ୍କା କେନ୍ଦ୍ର ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଶ୍ରୀକାନ୍ତ ଜେନାଙ୍କୁ ଏକ ପତ୍ର ଲେଖି ଅନୁରୋଧ କରିଛନ୍ତି ଏବଂ ରେଳ ମନ୍ତ୍ରଣାଳୟକୁ ମଧ୍ୟ ଅନୁରୂପ ଅନୁରୋଧ କରିଛନ୍ତି । ରୂପ୍‌ସା-ବାଙ୍ଗିରିପୋଷି ସରୁ ରେଳପଥକୁ ଓସାରିଆ ରେଳପଥରେ ପରିଣତ କରାଯାଉଥିବା ହେତୁ ରୂପ୍‌ସା - ବାଙ୍ଗିରିପୋଷି ଅଣଓସାରିଆ ରେଳପଥର ଲୁହାଧାରଣା ସ୍ଲିପର ପ୍ରଭୃତିର ଆଶୁ ବିନିଯୋଗ କରାଯାଇ କୋଣାର୍କ-ପୁରୀ ବେଳାଭୂମି ରେଳପଥ ବେଳାଭୂମି ସଡ଼କ ଏବଂ ସାଗରତୀର ସହ ସମାନ୍ତରାଳ ଭାବେ ନିର୍ମାଣ କରାଯାଇ ପାରିବ ବୋଲି ଶ୍ରୀ ଲେଙ୍କା ଦର୍ଶାଇଛନ୍ତି । ଏହା ଫଳରେ ପୁରୀ-କୋଣାର୍କ ପର୍ଯ୍ୟଟନ କେନ୍ଦ୍ର ପର୍ଯ୍ୟଟକମାନଙ୍କ ନିମନ୍ତେ ବିଶେଷ ଆକର୍ଷଣୀୟ ହୋଇପାରିବ ଏବଂ ଏହି ରେଳପଥ ଲାଭଦାୟକ ମଧ୍ୟ ହେବ ।

## ନିଖିଳ ଉତ୍କଳ ଶ୍ରୀ ଅରବିନ୍ଦ ମହିଳା ପାଠଚକ୍ର ସମ୍ମିଳନୀ

ଗତ ଜାନୁଆରୀ ୨୪ ତାରିଖରେ କେଉଁଝର ଠାରେ ଅଷ୍ଟାଦଶ ନିଖିଳ ଉତ୍କଳ ଶ୍ରୀ ଅରବିନ୍ଦ ମହିଳା ପାଠଚକ୍ର ସମ୍ମିଳନୀ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି ।

ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ କହିଲେ ଯେ ସାରା ଦେଶରେ ଏବେ ସଂସ୍କୃତିର ସଂକଟ ଦେଖାଦେଇଛି ଏବଂ ଏହି ସଂକଟର ସମାଧାନପାଇଁ ଶ୍ରୀ ଅରବିନ୍ଦଙ୍କ ପ୍ରଦର୍ଶିତ ମାର୍ଗ ପଥ ପ୍ରଦର୍ଶକ ହୋଇପାରିବ । ଶ୍ରୀ ଅରବିନ୍ଦ ତାଙ୍କର ୨୪ ବର୍ଷ ସାଧନା ଦ୍ୱାରା ଧରାପୃଷ୍ଠକୁ ଅତିମାନସ ଶକ୍ତିର ଅବତରଣ ଦ୍ୱାରା ଉଚ୍ଚତର ମନୁଷ୍ୟ ସୃଷ୍ଟି କରିବାପାଇଁ ପ୍ରୟାସ କରିଥିଲେ । ସବୁ ଧର୍ମରେ ମନୁଷ୍ୟକୁ ଉଚ୍ଚସ୍ଥାନ ଦିଆଯାଇଛି, କାରଣ ମନୁଷ୍ୟ ଈଶ୍ୱରଙ୍କ ପ୍ରତିଛବିରେ ଗଠିତ । ମହାନ୍ ଶକ୍ତି ଓ ସାଗର ଅଧିକାରୀ ମନୁଷ୍ୟ ଦେବତ୍ୱର ମହିମାରେ ମଣ୍ଡିତ ହୋଇପାରେ । ପୃଥିବୀରେ ଅନ୍ଧକାରର ଶକ୍ତି ଓ ଆଲୋକର ଶକ୍ତି ମଧ୍ୟରେ ଏବଂ ସଂସ୍କୃତି ଓ ଅପ-ସଂସ୍କୃତି ଭିତରେ ତୀବ୍ର ସଂଘର୍ଷ ଚାଲିଛି । ଏହି ସଂଘର୍ଷ ଭିତରୁ ସତ୍ୟ ଜନ୍ମ ନେବ ।

ମହିଳା ପାଠଚକ୍ରର ଭୂମିକା ସଂପର୍କରେ ଆଲୋକପାତ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ନାରୀ ବିନା ମାନବ ଜାତିର ଅଗ୍ରଗତି ଅସମ୍ଭବ । ନାରୀ ଜାତି ଶିକ୍ଷିତ ହେଲେ ଦେଶରେ ସାକ୍ଷରତା ବଢ଼ିବ । ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ବିଦ୍ୟାଳୟମାନଙ୍କରେ ଅଧିକ ସଂଖ୍ୟକ ଛାତ୍ରୀଙ୍କ ନାମ ଲେଖାଇବାପାଇଁ ସୁଯୋଗ ମିଳିବା ଉଚିତ୍ ବୋଲି ସେ କହିଥିଲେ ଏବଂ ସରକାର ରାଜ୍ୟରେ ଚାଲିଥିବା ପୂର୍ଣ୍ଣାଙ୍ଗ ବିଦ୍ୟାଳୟଗୁଡ଼ିକର ସବୁ ଉଦ୍ୟମରେ ସର୍ବବିଧ ସାହାଯ୍ୟ ସହଯୋଗ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ଉଦ୍‌ଘାଟନ ଉତ୍ସବରେ ମୁଖ୍ୟବକ୍ତା ରୂପେ ଯୋଗ ଦେଇ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ କଥାକାର ତଥା ଶ୍ରୀ ଅରବିନ୍ଦ ଆଶ୍ରମର ବିଶିଷ୍ଟ ସାଧକ ଶ୍ରୀ ମନୋଜ ଦାସ ଆତ୍ମ ଜାଗୃତିର ମୁହୂର୍ତ୍ତ ବିଷୟରେ ବକ୍ତୃତା ଦେଇ ଜ୍ଞାନ ଓ ବିଜ୍ଞାନରେ ଉନ୍ନତି ସାଧିତ ହେଲେ ମଧ୍ୟ ପ୍ରଜ୍ଞା ବ୍ୟତିରେକେ ମାନବ ଜାତି ବିବର୍ତ୍ତନ ଧାରାରେ ବିକଶିତ ହୋଇପାରିବ ନାହିଁ ବୋଲି କହିଥିଲେ ।

ସମ୍ମାନିତ ଅତିଥି ଗଣଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଜୟଦେବ ଜେନା ତାଙ୍କ ଭାଷଣରେ ରାଜ୍ୟର ସାକ୍ଷରତା ହାର ଅଭିବୃଦ୍ଧି ଦିଗରେ ପାଠଚକ୍ର ଆନ୍ଦୋଳନ ସହାୟକ ହେବ ବୋଲି ଆଶା ବ୍ୟକ୍ତ କରିଥିଲେ ।

ଉତ୍ସବରେ ଶିକ୍ଷମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ସଭାପତିତ୍ୱ କରିଥିଲେ ଓ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ ଅତିଥିମାନଙ୍କ ପରିଚୟ ପ୍ରଦାନ କରିଥିଲେ ।

## ଜାପାନ ଇଟୋସୁ କର୍ପୋରେସନ୍‌ର ପ୍ରତିନିଧି ଦଳଙ୍କ ସହିତ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ଆଲୋଚନା

ମିଷ୍ଟର କୋୟା ମିଟାଙ୍କ ନେତୃତ୍ୱରେ ଜାପାନ ଇଟୋସୁ କର୍ପୋରେସନ୍‌ର ଏକ ପ୍ରତିନିଧି ଦଳ ଓଡ଼ିଶା ଗସ୍ତରେ ଆସି ସଚିବାଳୟଠାରେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ସହିତ ସାକ୍ଷାତ୍ ଆଲୋଚନା କରିଥିଲେ । ଉପମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ ପ୍ରତିନିଧି ଦଳଙ୍କୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ବିପୁଳ ପରିମାଣରେ ଗଚ୍ଛିତ ଥିବା ପ୍ରାକୃତିକ ତଥା ଖଣିଜ ସଂପଦକୁ ବିଦେଶୀ ଶିଳ୍ପୋଦ୍ୟୋଗୀମାନଙ୍କ ସହାୟତାରେ ସଦ୍‌ବିନିଯୋଗ କରି ରାଜ୍ୟବାସୀଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିବା ପାଇଁ ଅନୁରୋଧ କରିଥିଲେ । ତାପଜ ବିଦ୍ୟୁତ କେନ୍ଦ୍ର ସ୍ଥାପନ ପାଇଁ ଏଠାରେ ପ୍ରଚୁର ପରିମାଣରେ କୋଇଲା ମହଜୁଦ୍ ଥିବା ସହିତ ବିସ୍ତୃତ ବେଳାଭୂମି, ଭାରତର ସର୍ବବୃହତ୍ ହ୍ରଦ ଚିଲିକା, ପୁରୀ, କୋଣାର୍କ ପ୍ରଭୃତି ଦର୍ଶନୀୟ ସ୍ଥାନ, ଅତୀତରେ ବୌଦ୍ଧଧର୍ମକୁ କେନ୍ଦ୍ର କରି ଗଢ଼ି ଉଠିଥିବା ପ୍ରାଚୀନ କୀର୍ତ୍ତି ପର୍ଯ୍ୟଟକଙ୍କ ପାଇଁ ବ୍ୟାପକ ସମ୍ଭାବନା ରହିଛି ଏବଂ ଏହା ବିଦେଶୀ ପର୍ଯ୍ୟଟକମାନଙ୍କୁ ବିଶେଷ ଭାବେ ଆକର୍ଷଣ କରିପାରିବ ବୋଲି ଶ୍ରୀ ବିଶ୍ୱାଳ ପ୍ରକାଶ କରିବା

ସହିତ ଏହାର ବିକାଶ ପାଇଁ ଜାପାନର ସହଯୋଗ କାମନା କରିଥିଲେ ।

ଏହି ଆଲୋଚନା ସମୟରେ ମିଷ୍ଟର କୋୟା ମିଟା ବନ୍ଦର ଭିତ୍ତିକ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଆଗ୍ରହ ପ୍ରକାଶ କରିବାରୁ ଉପ-ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ ପାରାଦୀପଠାରେ ଜାପାନ୍ ସହାୟତାରେ ଏକ ଖାଦ୍ୟ ପ୍ରକ୍ରିୟାକରଣ ପ୍ଲାଣ୍ଟ ସ୍ଥାପନ ପାଇଁ ଅନୁରୋଧ କରିଥିଲେ । ପାରାଦୀପଠାରେ ୧୦ ହଜାର ଏକର ଜମିରେ ଏକ ଇଣ୍ଡଷ୍ଟ୍ରିଆଲ ପାର୍କ ବା ଶିଳ୍ପ ଉଦ୍ୟାନ ପାଇଁ ଆବଶ୍ୟକୀୟ ଭିତ୍ତିଭୂମିର ଉନ୍ନତି ନିମନ୍ତେ ରାଜ୍ୟ ସରକାରଙ୍କ ପକ୍ଷରୁ ପଦକ୍ଷେପ ଆରମ୍ଭ ହୋଇଛି ବୋଲି ଶ୍ରୀ ବିଶ୍ୱାଳ ପ୍ରତିନିଧି ଦଳଙ୍କୁ ସୂଚନା ଦେବା ସଙ୍ଗେ ସଙ୍ଗେ ସେଠାରେ ପ୍ରଚୁର ପରିମାଣର ସାମୁଦ୍ରିକ ମାଛ ଧରାଯାଉଥିବା ଏବଂ ଫ୍ରିଜିଂ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା ସଂପର୍କରେ ସେମାନଙ୍କୁ ଅବଗତ କରାଇଥିଲେ ।

ଏହା ବ୍ୟତୀତ ପେଟ୍ରୋ-କେମିକାଲ ପ୍ରକଳ୍ପ, ଶକ୍ତି ଉତ୍ପାଦନ, କୃଷିଭିତ୍ତିକ ଶିଳ୍ପ, ପର୍ଯ୍ୟଟନ ବିକାଶ, ଖାଦ୍ୟ ପ୍ରକ୍ରିୟାକରଣ, ଲୌହ ଇସ୍ପାତ ଆଦି ସଂପର୍କରେ ବିସ୍ତୃତ ଭାବେ ଆଲୋଚନା କରାଯାଇଥିଲା ।

## ଚନ୍ଦନ ହଜୁରୀ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହ

ଭାରତୀୟ ସ୍ୱାଧୀନତା ସଂଗ୍ରାମର ପଞ୍ଚ ପୁରୋଧା ମହାନ୍ ବୀର ଚନ୍ଦନ ହଜୁରୀ ଚାଖି ଖୁଣ୍ଟିଆଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହ ଗତ ଜାନୁଆରୀ ୨୦ ତାରିଖରେ ସ୍ଥାନୀୟ ସୂଚନା ଭବନଠାରେ ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ ଏବଂ ପୁରୀ ଜିଲ୍ଲା ଚାଖି ଖୁଣ୍ଟିଆ ସ୍ମୃତି ସମିତି ଆନୁକୂଲ୍ୟରେ ପାଳିତ ହୋଇଯାଇଛି । ଏଥିରେ ସଭାପତିତ୍ୱ କରି ସୂଚନା ଓ ଲୋକ ସଂପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ସନ୍ତୋଷ କୁମାର ମିଶ୍ର ଚାଖି ଖୁଣ୍ଟିଆଙ୍କ ଜୀବନାଦର୍ଶର ବିଶ୍ଳେଷଣ କରି ସମସ୍ତ ପ୍ରତିବନ୍ଧକ ଏବଂ ପ୍ରତିରୋଧ ସତ୍ତ୍ୱେ ସେ କିଭଳି ନିଜକୁ ପ୍ରତିଷ୍ଠା କରି ପାରିଥିଲେ ଏବଂ ଦେଶରୁ ବ୍ରିଟିଶ ଶାସନର ପତନ ଘଟାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ତାହା ବର୍ଣ୍ଣନା କରିଥିଲେ । ସିପାହୀ ପଣ୍ଡା ନାମରେ ବ୍ରିଟିଶ ସରକାରଙ୍କର ଶାସନ ଗାଦିକୁ ଦୋହଲାଇ ଦେଇଥିବା ଏହି ବୀର ଓଡ଼ିଆ ଯୁବକଙ୍କର ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ସମସ୍ତଙ୍କୁ ଆହ୍ୱାନ କରିଥିଲେ । ତାଙ୍କର ଜୀବନୀ ଉପରେ ଅଧିକ ଗବେଷଣା କରାଯିବା ସହିତ ସ୍ୱତନ୍ତ୍ର ଲେଖାମାନ ପ୍ରକାଶ କରାଯିବା ଉଚିତ୍ ବୋଲି ସେ କହିଥିଲେ ।

ଏଥିରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ଚାଖି ଖୁଣ୍ଟିଆ ସ୍ମୃତି ସଂସଦର ସଦସ୍ୟ ଶ୍ରୀ ହରିହର ବାହିନୀପତି ପ୍ରତିମା ପୂଜା ତଥା ବୀର ପୂଜାରେ ସଂପୃକ୍ତ ବ୍ୟକ୍ତି ଯେତିକି ସମ୍ମାନୀତ ହୁଅନ୍ତି ନାହିଁ, ତା'ଠାରୁ ଅଧିକ ସେ ଜାତି ତଥା ଦେଶ ସମ୍ମାନିତ ହୋଇଥାଏ ବୋଲି କହିଥିଲେ । ଏହି ମହାନ୍ ଦେଶ ନାୟକଙ୍କର ଜୟନ୍ତୀ ପାଳନ କରାଯାଉଥିବାରୁ ସେ ଗର୍ବିତ ବୋଲି କହିଥିଲେ ।

ମୁଖ୍ୟବକ୍ତା ଭାବରେ ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ବିଜୟ ଚନ୍ଦ୍ର ରଥ ପ୍ରବାଦ ପୁରୁଷ ଚାଖି ଖୁଣ୍ଟିଆ ଜଗନ୍ନାଥଙ୍କର ଅନନ୍ୟ ସେବକ, ପାଦ୍ରିମାନଙ୍କର ଅପପ୍ରଚାରରୁ ଜଗନ୍ନାଥଙ୍କର ମୌଳିକତାକୁ ରକ୍ଷା କରିଥିଲେ ବୋଲି କହିଥିଲେ । ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ସିପାହୀ ବିଦ୍ରୋହର ମୁଖ୍ୟ ରାଣୀ ଲକ୍ଷ୍ମୀବାଈଙ୍କ ସହ ମିଶି ସେ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ କରି ଗୋରାମାନଙ୍କର କୋପଦୃଷ୍ଟିରେ ବଂନ୍ଦୀ ହୋଇ ନିର୍ଯ୍ୟାତିତ ଜୀବନ ବିତାଇଥିଲେ । ଚାଖିଖୁଣ୍ଟିଆ ପୁରୀରେ ବ୍ରିଟିଶ ଶାସକଙ୍କର କୋପ ଦୃଷ୍ଟିରେ ରହି ସାହିତ୍ୟ ରଚନା ଓ ଜଗନ୍ନାଥଙ୍କର ସେବାରେ ନିଜକୁ ନିୟୋଜିତ କରିଥିଲେ । ପୂର୍ବର ସମସ୍ତ ତେଜ ଏବଂ ନେତୃତ୍ୱ ହରାଇଥିବାରୁ "ଚାଖି ଖୁଣ୍ଟିଆ, ପାନ ନାହିଁ, ଗୁଆ ନାହିଁ, ଖାଲି ବଟୁଆ" ପ୍ରବାଦ ଅବତାରଣା କରି ଏହି ସିପାହୀ ପଣ୍ଡାଙ୍କ ଆଦର୍ଶକୁ ବଜାୟ ରଖି ଜଗନ୍ନାଥ ସଂସ୍କୃତିର ସୁରକ୍ଷା କରିବା ପାଇଁ ସେ ସମସ୍ତଙ୍କୁ ନିବେଦନ କରିଥିଲେ ।

ସୂଚନା ଓ ଲୋକ ସଂପର୍କ ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ପ୍ରାଣକୃଷ୍ଣ ବେହେରା ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ । ଚାଖି ଖୁଣ୍ଟିଆ ସ୍ମୃତି ସଂସଦର ସଂପାଦକ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର ଧନ୍ୟବାଦ ଅର୍ପଣ କରିଥିଲେ । ବକ୍ତୃତା ପ୍ରତିଯୋଗିତାର କୃତୀ ପ୍ରତିଯୋଗୀମାନଙ୍କୁ ସଭାପତି ଶ୍ରୀ ମିଶ୍ର ପୁରସ୍କାର ଓ ମାନପତ୍ର ପ୍ରଦାନ କରିଥିଲେ ।

## ସୂଚନା ଓ ଲୋକ ସଂପର୍କ ବିଭାଗର ନୂତନ ସଚିବଙ୍କ ଦାୟିତ୍ୱ ଗ୍ରହଣ

ଗତ ଫେବୃୟାରୀ ୧୫ ତାରିଖ ଦିନ ଶ୍ରୀ ରାମ ବେହେରା, ଆଇ.ଏ.ଏସ୍. ସୂଚନା ଓ ଲୋକ ସଂପର୍କ ବିଭାଗର ନୂତନ ସଚିବ ଭାବରେ ଦାୟିତ୍ୱ ଗ୍ରହଣ କରିଛନ୍ତି । ଦାୟିତ୍ୱ ଗ୍ରହଣ କରିବା ପରେ ଶ୍ରୀ ବେହେରା ଏହି ବିଭାଗର ସମସ୍ତ ଉପବିଭାଗ ପରିଦର୍ଶନ କରି କାର୍ଯ୍ୟାବଳୀ ସଂପର୍କରେ ବିଭାଗୀୟ କର୍ମଚାରୀମାନଙ୍କୁ ପଚାରି ବୁଝିଥିଲେ । ନିର୍ଦ୍ଦେଶକ ଦାୟିତ୍ୱରେ ଥିବା ଉପଶାସନ ସଚିବ ଶ୍ରୀ ଜମିଲ ଖାଁ, ଉପନିର୍ଦ୍ଦେଶକ ଶ୍ରୀ ତାରାକାନ୍ତ ମହାନ୍ତି ପ୍ରମୁଖ ସଚିବଙ୍କ ସହିତ ସମସ୍ତ ବିଭାଗ ବୁଲି ପରିଚିତ କରାଇଥିଲେ ।

## ଅପର ଇନ୍ଦ୍ରାବତୀ ଜଳ ବିଦ୍ୟୁତ ପ୍ରକଳ୍ପ ୧୯୯୮ ମସିହାରୁ ବିଦ୍ୟୁତ ଉତ୍ପାଦନ କରିବ

### ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ

କଳାହାଣ୍ଡି ଜିଲ୍ଲାରେ ୧୧୦୭ କୋଟି ଟଙ୍କା ବ୍ୟୟରେ ନିର୍ମାଣାଧୀନ ଅପର ଇନ୍ଦ୍ରାବତୀ ଜଳ ବିଦ୍ୟୁତ ପ୍ରକଳ୍ପରୁ ୧୯୯୮ ସେପ୍ଟେମ୍ବର ମାସଠାରୁ ୬୦୦ ମେଗାୱାଟ ଶକ୍ତି ସଂପନ୍ନ ବିଦ୍ୟୁତ ଉତ୍ପାଦନ ଆରମ୍ଭ ହେବ ବୋଲି ଉପ ମୁଖ୍ୟମନ୍ତ୍ରୀ ତଥା ଜଳ ସଂପଦ, ଅର୍ଥ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ପ୍ରକାଶ କରିଛନ୍ତି ।

ଗତ ଫେବୃୟାରୀ ୧୧ ତାରିଖ ଦିନ ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ ପ୍ରକଳ୍ପ ନିର୍ମାଣର ଅଗ୍ରଗତି ସଂପର୍କରେ ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଏହି ପ୍ରକଳ୍ପ ନିର୍ମାଣ ପାଇଁ ଧାର୍ଯ୍ୟ କରାଯାଇଥିବା ସମୟ ସୀମା ମଧ୍ୟରେ ସଂପୂର୍ଣ୍ଣ କରିବା ନିମନ୍ତେ ଜଳ ବିଦ୍ୟୁତ୍ ନିଗମର ନିର୍ଦ୍ଦେଶକଙ୍କୁ ପରାମର୍ଶ ଦେଇଥିଲେ ।

## ଜଳ ସଂପଦ ଭବନର ଭିତ୍ତି ପ୍ରସ୍ତର ସ୍ଥାପିତ

ଗତ ଫେବୃୟାରୀ ୧୦ ତାରିଖରେ ସ୍ଥାନୀୟ କେଶରୀ ନଗରଠାରେ ଉପ ମୁଖ୍ୟମନ୍ତ୍ରୀ ତଥା ଜଳ ସଂପଦ, ଅର୍ଥ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଜଳ ସଂପଦ ଭବନ ର ଭିତ୍ତି ପ୍ରସ୍ତର ସ୍ଥାପନ କରିଛନ୍ତି । ଆଠ କୋଟି ଟଙ୍କାର ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଥିବା ଏହି ଭବନଟି ଆଗାମୀ ଦୁଇବର୍ଷ ମଧ୍ୟରେ ସଂପୂର୍ଣ୍ଣ ହେବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ଏହି ଉପଲକ୍ଷେ ସେଠାରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଉଦ୍‌ବୋଧନ ଦେଇ ଶ୍ରୀ ବିଶ୍ୱାଳ କହିଲେ ଯେ, ରାଜ୍ୟରେ ସଂପ୍ରତି ୩୦ ଭାଗ ଜମିକୁ ଜଳସେଚନର ସୁବିଧା ଉପଲବ୍ଧ ଥିବା ସ୍ଥଳେ ଏହାକୁ ୫୦ ଭାଗକୁ ବୃଦ୍ଧି କରିବା ପାଇଁ ରାଜ୍ୟ ସରକାର ଆବଶ୍ୟକ ପଦକ୍ଷେପ ଗ୍ରହଣ କରୁଛନ୍ତି । ରେଂଗାଲି ଜଳଭଣ୍ଡାର ଓ ସୁବର୍ଣ୍ଣରେଖାର ଜମ୍ବୀରା ପ୍ରକଳ୍ପର ଜଳକୁ ସେଚକାର୍ଯ୍ୟରେ ବିନିଯୋଗ ନିମନ୍ତେ ସମସ୍ତ ପ୍ରକାର ପଦକ୍ଷେପ ଗ୍ରହଣ କରାଯିବା ସହିତ କଳାହାଣ୍ଡିରେ ପରି-ସୁଡ଼ଂଗ ମାଧ୍ୟମରେ ୩୫ ହଜାର ହେକ୍ଟର ଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯାଇଛି । ରାଜ୍ୟ ଜଳ ସଂପଦ ବିଭାଗ ବନ୍ୟା ନିୟନ୍ତ୍ରଣ, ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନରେ ପ୍ରମୁଖ ଭୂମିକା ସହ ପର୍ଯ୍ୟଟନର ବିକାଶ ପାଇଁ ଅନେକଗୁଡ଼ିଏ ଯୋଜନା ହାତକୁ ନେଇଛି ବୋଲି ଶ୍ରୀ ବିଶ୍ୱାଳ ସୂଚନା ଦେଇଥିଲେ ।

ଏହି ଉତ୍ସବରେ ଅଧ୍ୟକ୍ଷତା କରି ମୁଖ୍ୟ ଶାସନ ସଚିବ ଶ୍ରୀ ରାଜ କିଶୋର ଭୂଜବଳ ଦେଶ ଓ ରାଜ୍ୟ ପାଇଁ ଜଳ ସଂପଦର ଆବଶ୍ୟକତା ଉପରେ ଆଲୋକପାତ କରିଥିଲେ । ଜଳ ସଂପଦ ଭବନ ଓଡ଼ିଶାର ପ୍ରଗତିର ଏକ ପ୍ରତୀକ ବୋଲି ସେ ଅଭିହିତ କରିଥିଲେ ।

ଜଳ ସଂପଦ ବିଭାଗର ଶାସନ ସଚିବ ଶ୍ରୀ ରବି ନାରାୟଣ ସେନାପତି ସ୍ୱାଗତ ଭାଷଣ ଦେଇ ସଂପ୍ରତି ରାଜ୍ୟରେ ପ୍ରଗତି ଓ ନିର୍ମାଣର ଯୁଗ ଆରମ୍ଭ ହୋଇଛି ବୋଲି ଉଲ୍ଲେଖ କରିଥିଲେ ।

## ସୂଚନା ଓ ଲୋକ ସଂପର୍କ ବିଭାଗର ଅତିରିକ୍ତ ନିର୍ଦ୍ଦେଶକଙ୍କ ଅବସର ଗ୍ରହଣ

ସୂଚନା ଓ ଲୋକ ସଂପର୍କ ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ପ୍ରାଣକୃଷ୍ଣ ବେହେରା ଗତ ଜାନୁଆରୀ ୩୧ ତାରିଖରେ କାର୍ଯ୍ୟରୁ ଅବସର ଗ୍ରହଣ କରିଛନ୍ତି । ଏହା ବ୍ୟତୀତ ବିଭାଗର ଉପ ବିଭାଗ ଅଧିକାରୀ ଶ୍ରୀ ରମେଶ କୁମାର ମହାନ୍ତି ଓ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ଲୋକନାଥ ପଲେଇ ମଧ୍ୟ ତାଙ୍କ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିଛନ୍ତି ।

ସେମାନଙ୍କର ଅବସର ଗ୍ରହଣ ଉପଲକ୍ଷେ ବିଭାଗୀୟ ସମ୍ମିଳନୀ କକ୍ଷରେ ଏକ ବିଦାୟ କାଳୀନ ସମ୍ବର୍ଦ୍ଧନା ସଭା ନିର୍ଦ୍ଦେଶକ ଶ୍ରୀ ସନ୍ତୋଷ କୁମାର ମିଶ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ନିର୍ଦ୍ଦେଶକ ଶ୍ରୀ ମିଶ୍ର ବିଦାୟୀ ବନ୍ଧୁମାନଙ୍କ ଆଦର୍ଶ ଓ କର୍ମମୟ ଜୀବନରୁ ଅନ୍ୟମାନେ କିଛି ଗ୍ରହଣ କରି ଏ ବିଭାଗର ସୁନାମ ରକ୍ଷା କରିବା ଦିଗରେ କାର୍ଯ୍ୟ କରିବେ ବୋଲି ଆଶା ପୋଷଣ କରିଥିଲେ । ବିଭାଗୀୟ କର୍ମଚାରୀମାନଙ୍କ ତରଫରୁ ନିର୍ଦ୍ଦେଶକ ତିନି ବିଦାୟୀ କର୍ମଚାରୀଙ୍କୁ ଉପହାର ଓ ପୁଷ୍ପଗୁଚ୍ଛ ପ୍ରଦାନ କରି ସମ୍ବର୍ଦ୍ଧନା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଦୀର୍ଘ ନିରାମୟ ଜୀବନ କାମନା କରିଥିଲେ ।

ଏହି ବିଦାୟକାଳୀନ ସଭାରେ ଅନ୍ୟମାନଙ୍କ ମଧ୍ୟରେ ବିଭାଗୀୟ ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଅଭୟ ଚରଣ ମହାପାତ୍ର ଓ ଉପ ଶାସନ ସଚିବ ଶ୍ରୀ ଜମିଲ୍ ଅହମ୍ମଦଙ୍କ ସମେତ ବିଭିନ୍ନ ଉପ ବିଭାଗର ଅଧିକାରୀ ଓ ଅନ୍ୟାନ୍ୟ କର୍ମଚାରୀମାନେ ବିଦାୟୀ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ବେହେରା, ଉପ-ବିଭାଗ ଅଧିକାରୀ ଶ୍ରୀ ମହାନ୍ତି ଓ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ପଲେଇଙ୍କର କାର୍ଯ୍ୟ ଦକ୍ଷତା ଓ ଅମାୟିକ ବ୍ୟବହାରର ଭୂୟସୀ ପ୍ରଶଂସା କରି ତାଙ୍କର ଗୁଣଗାନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଦୀର୍ଘ ସୁଖମୟ ଜୀବନ କାମନା କରିଥିଲେ ।

ଏହି ସମ୍ବର୍ଦ୍ଧନା ସଭାରେ ବିଭାଗୀୟ ଅଧିକାରୀ ଓ କର୍ମଚାରୀମାନେ ଯୋଗ ଦେଇଥିଲେ ।

## ୨୦୦୧ ମସିହା ସୁଦ୍ଧା ରାଜ୍ୟର ଅର୍ଦ୍ଧାଧିକ ଚାଷଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯିବ

ଗତ ଫେବୃଆରୀ ୧୭ ତାରିଖରେ ୬୦ କୋଟି ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ସୁବର୍ଣ୍ଣପୁର ଜିଲ୍ଲାର ହରିହର ଯୋର ମଧ୍ୟମ ଜଳସେଚନ ପ୍ରକଳ୍ପକୁ ଉପମୁଖ୍ୟମନ୍ତ୍ରୀ ତଥା ଜଳ ସଂପଦ, ଅର୍ଥ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ବସନ୍ତକୁମାର ବିଶ୍ୱାଳ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି ।

ଏହି ଉପଲକ୍ଷେ ବୀର ମହାରାଜପୁର ବ୍ଲକ ଅନ୍ତର୍ଗତ ଲୁହାଖଣ୍ଡି ଗ୍ରାମଠାରେ ଆୟୋଜିତ ଏକ ସାଧାରଣ ସଭାରେ ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ ଉଦ୍ ବୋଧନ ଦେଇ କହିଲେ ଯେ ଆଗାମୀ ୨୦୦୧ ମସିହା ସୁଦ୍ଧା ରାଜ୍ୟର ଅର୍ଦ୍ଧାଧିକ ଚାଷଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯିବା ପାଇଁ ରାଜ୍ୟ ସରକାର ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି । ଏହି ଅଞ୍ଚଳର ଦ୍ରୁତ ବିକାଶ ପାଇଁ ସିନ୍ଧୋଳ ଜଳ ବିଦ୍ୟୁତ୍ ପ୍ରକଳ୍ପ ଓ ସୁରୁବାଲି ଯୋର ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ କରିବାକୁ ସ୍ଥିର କରାଯାଇଛି ।

ଜଳସେଚନ ବିଭାଗର ସର୍ବୋଚ୍ଚ ଯନ୍ତ୍ରୀ ଡଃ ବିଷ୍ଣୁ ପ୍ରସାଦ ଦାସ ପ୍ରକଳ୍ପ ସଂପର୍କରେ ସୂଚନା ଦେଇ କହିଲେ ଯେ ଏହାଦ୍ୱାରା ୯୪୫୦ ହେକ୍ଟର ଜମି ଖରିଫ୍ ଋତୁରେ ଓ ୪୨୫୦ ହେକ୍ଟର ଜମି ରବିଋତୁରେ ଜଳସେଚିତ ହୋଇ ପାରିବ ଏବଂ ବୀର ମହାରାଜପୁର ଉପଖଣ୍ଡ ଅନ୍ତର୍ଗତ ୮୦ ଟି ଗ୍ରାମ ଉପକୃତ ହୋଇପାରିବେ ।

### ହାତୀଆନାଳ କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ଉଦ୍‌ଘାଟନ

ଝାରସୁଗୁଡ଼ା ଜିଲ୍ଲା ଲାଇକେରା ବ୍ଲକ ଅନ୍ତର୍ଗତ ବନ୍ଧପାଲ୍ଲୀ ଗ୍ରାମର ହାତୀଆନାଳ କ୍ଷୁଦ୍ର ଜଳସେଚନ ପ୍ରକଳ୍ପକୁ ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଉଦ୍‌ଘାଟନ କରିଛନ୍ତି । ଏହି ଉପଲକ୍ଷେ ଆୟୋଜିତ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ଶ୍ରୀ ବିଶ୍ୱାଳ କହିଲେ ଯେ ଏହି ପ୍ରକଳ୍ପଟି କାର୍ଯ୍ୟକାରୀ ହେବା ଦ୍ୱାରା ଚିର ମରୁଡ଼ି ପ୍ରପୀଡ଼ିତ ଏହି ଅଞ୍ଚଳଟି ଜଳସେଚନର ସୁବିଧା ଲାଭ କରି ଶସ୍ୟ ଶ୍ୟାମଳା ହୋଇପାରିବ ।

ଏହି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ନିର୍ମାଣ ବାବଦରେ ଖର୍ଚ୍ଚ ହୋଇଥିବା ମୋଟ୍ ୧୧ କୋଟି ୪୪ ଲକ୍ଷ ଟଙ୍କା ମଧ୍ୟରୁ ନାବାର୍ଡ଼ ପକ୍ଷରୁ ୪ କୋଟି ୮୯ ଲକ୍ଷ ଟଙ୍କା ଆର୍ଥିକ ସହାୟତା ଯୋଗାଇ ଦିଆଯାଇଛି । ଏହିପ୍ରକଳ୍ପ ଜରିଆରେ ଖରିଫ୍ଋତୁରେ ୨୦୨୪ ହେକ୍ଟର ଓ ରବିଋତୁରେ ୯୧୦ ହେକ୍ଟର ଜମି ଜଳସେଚିତ ହୋଇପାରିବ ।

## ଅବିଭକ୍ତ କୋରାପୁଟ ଜିଲ୍ଲାର ସର୍ବାଙ୍ଗୀନ ବିକାଶ ସାଧନ କରାଯିବ

ଅବିଭକ୍ତ କୋରାପୁଟ ଜିଲ୍ଲାରେ ଭରପୂର ଜଳ ସଂପଦ, ଖଣିଜ ପଦାର୍ଥ ଓ ବନ୍ୟଜାତ ଦ୍ରବ୍ୟର ସଦୁପଯୋଗ କରାଯାଇ ଏହାର ସାମୂହିକ ବିକାଶ ନିମନ୍ତେ ସରକାର ସଂକଳ୍ପବଦ୍ଧ ବୋଲି ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ମତବ୍ୟକ୍ତ କରିଛନ୍ତି ।

ଫେବ୍ରୁୟାରୀ ୧୬ ତାରିଖରେ ରାୟଗଡ଼ା ଜିଲ୍ଲାର କେହ୍ନୁଗୁଡ଼ାଠାରେ ବଡ଼ନଳା ଜଳସେଚନ ପ୍ରକଳ୍ପକୁ ଉଦ୍‌ଘାଟନ କରି ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ଶ୍ରୀ ବିଶ୍ୱାଳ କହିଲେ ଯେ ଏହି ଜିଲ୍ଲାରେ କୃଷି, ଜଳସେଚନ ଓ ବିଦ୍ୟୁତଶକ୍ତି ଉତ୍ପାଦନକୁ ଅଗ୍ରାଧିକାର ଦିଆଯାଇ ବିଭିନ୍ନ ଯୋଜନାମାନ କାର୍ଯ୍ୟକାରୀ କରାଯାଉଛି । ଶ୍ରୀ ବିଶ୍ୱାଳ ପ୍ରାଥମିକ ବିଦ୍ୟାଳୟରେ ଚାଲିଥିବା ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ, କିଲୋ ଦୁଇଟଙ୍କାରେ ଚାଉଳ ଯୋଗାଣ ଅସହାୟ ଅକର୍ମଣ୍ୟ ଏବଂ ଗରିବ ଲୋକମାନଙ୍କୁ ଭତ୍ତାଖାଦ୍ୟ ଯୋଗାଣ, ବ୍ୟବସ୍ଥାର ସଫଳତା ସଂପର୍କରେ ସୂଚନା ଦେଇଥିଲେ । ଆଦିବାସୀ, ହରିଜନ ଓ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କର ସାମାଜିକ ତଥା ଅର୍ଥନୈତିକ ସ୍ଥିତିର ବିକାଶ ପାଇଁ ସରକାର ସତତ ଚେଷ୍ଟିତ ଅଛନ୍ତି ବୋଲି ଶ୍ରୀ ବିଶ୍ୱାଳ କହିଥିଲେ ।

ଏହି ଉତ୍ସବରେ ସଭାପତିତ୍ୱ କରି ଲୋକସଭା ସଦସ୍ୟ ଶ୍ରୀ ଗିରିଧର ଗମାଙ୍ଗୋ କୋରାପୁଟର ସାମୂହିକ ଉନ୍ନତି ପାଇଁ ଜନସାଧାରଣଙ୍କର ସକ୍ରିୟ ସହଯୋଗ ଏକାନ୍ତ ଆବଶ୍ୟକ ବୋଲି ମତବ୍ୟକ୍ତ କରିଥିଲେ ।

ଗୁଣୁପୁର ବିଧାୟକ ଶ୍ରୀ ଭାଗୀରଥି ଗମାଙ୍ଗୋ ଓ ବିଷମ କଟକ ବିଧାୟକ ଶ୍ରୀ ଡମ୍ବରୁଧର ଉଲାକା ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ଏହି ପ୍ରକଳ୍ପ ଦ୍ୱାରା ଏହି ଅଞ୍ଚଳରେ କୃଷିର ବିକାଶ ହୋଇପାରିବ ବୋଲି ମତବ୍ୟକ୍ତ କରିବା ସହ ସ୍ଥାନୀୟ ସମସ୍ୟା ସଂପର୍କରେ ଉପମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଅନ୍ୟତମ ସମ୍ମାନିତ ଅତିଥି ଜଳ ସଂପଦ ବିଭାଗ ଶାସନ ସଚିବ ଶ୍ରୀ ରବିନାରାୟଣ ସେନାପତି ରାଜ୍ୟର ଜଳସେଚନ ପ୍ରକଳ୍ପଗୁଡ଼ିକ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ଶେଷ କରାଯିବ ବୋଲି ଆଶା ବ୍ୟକ୍ତ କରିଥିଲେ ।

ବଡ଼ନଳା ପ୍ରକଳ୍ପଟି ୧୯୯୯ ମସିହା ସୁଦ୍ଧା ସଂପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇପାରିବ ଏବଂ ଏହାଦ୍ୱାରା ୮୬୫୩ ହେକ୍ଟର ଜମିକୁ ଜଳସେଚିତ କରାଯାଇ ପାରିବା ସହ ୬୫୦ କିଲୋୱାଟ୍ ବିଦ୍ୟୁତଶକ୍ତି ଉତ୍ପାଦିତ ହୋଇପାରିବ ବୋଲି ସର୍ବୋଚ୍ଚ ଯନ୍ତ୍ରୀ ଡଃ ବିଷ୍ଣୁ ପ୍ରସାଦ ଦାସ ସୂଚନା ଦେଇଥିଲେ ।

OGP—MP—PTS (I & P R) 79—5,000—11-4-1997







କଟକ ସତ୍ୟବ୍ରତ ଷ୍ଟାଡିୟମଠାରେ ନେତାଜୀ ଶତବାର୍ଷିକୀ ଉଦ୍‌ଯାପନ କମିଟି ଆନୁକୂଲ୍ୟରେ ଆୟୋଜିତ ଜାତୀୟ ସଂହତି ଯୁବ ଶିବିରରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଶିବିରାର୍ଥୀଙ୍କ ଗହଣରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ଉପଭୋଗ କରୁଛନ୍ତି



ଆଇରଲାଣ୍ଡରୁ ଏକ ଶିଳ୍ପ ପ୍ରତିନିଧି ଦଳର ନେତୃତ୍ୱ ନେଇ ଆସିଥିବା ଶ୍ରୀ ପ୍ରାଟାଇ ଭିଓ ଫାଇଣ୍ଡନାଙ୍କ ଗହଣରେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

VOL. LIII, No. 7 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜନ୍ମଶତବାର୍ଷିକୀ ପାଳନ ଅବସରରେ କଟକ ଓଡ଼ିଆ ବଜାରସ୍ଥିତ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଜନ୍ମ ସ୍ଥାନରୁ ଜୟହିନ୍ଦ୍ ଜ୍ୟୋତି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ସାଂସଦ ଶ୍ରୀ ଅଜିତ୍ କୁମାର ପାଂଜାଙ୍କୁ ନେତାଜୀଙ୍କ କର୍ମପୀଠ କଲିକତା ନେବା ଉଦ୍ଦେଶ୍ୟରେ ଅର୍ପଣ କରୁଛନ୍ତି ।



ଭୁବନେଶ୍ୱର ରାଜ୍ୟଭବନ ଛକଠାରେ ସ୍ଥାପନ କରାଯାଇଥିବା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରତିମୂର୍ତ୍ତିକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉନ୍ମୋଚନ କରୁଛନ୍ତି

